# ଈଶ୍ୱରଗୀତା

ଲେଖିକା :

**ଡକ୍ଟର ଜୟଶ୍ରୀ ନନ୍ଦ**

ଅଧ୍ୟକ୍ଷା, ସରକାରୀ ସଂସ୍କୃତ ମହାବିଦ୍ୟାଳୟ,

ବାରିପଦା, ମୟୂରଭଞ୍ଜ, ଓଡ଼ିଶା

ଓମ୍ ପ୍ରକାଶନ ମନ୍ଦିର

ଦୋଳମଣ୍ଡପ ସାହି, ପୁରୀ

# ଈଶ୍ୱରଗୀତା

ଲେଖିକା :

**ଡକ୍ଟର ଜୟଶ୍ରୀ ନନ୍ଦ**

ଅଧ୍ୟକ୍ଷା, ସରକାରୀ ସଂସ୍କୃତ ମହାବିଦ୍ୟାଳୟ,

ବାରିପଦା, ମୟୂରଭଞ୍ଜ, ଓଡ଼ିଶା

ଫୋନ : ୦୬୭୯୨-୨୫୨୦୯୩, ୯୪୩୭୨୩୮୦୩୩

ପ୍ରକାଶକ :

ଓମ୍ ପ୍ରକାଶନ ମନ୍ଦିର, ଦୋଳମଣ୍ଡପ ସାହି,

ପୁରୀ- ୭୫୨୦୦୧

aumkar@live.in

www.aumbooks.in



ଲିପିକରଣ :

କାଳିଆ ଡ଼ି.ଟି.ପି. ସେଣ୍ଟର

ମହୋଦଧି ମାର୍କେଟ, ମୋଚିସାହି, ପୁରୀ

ମୁଦ୍ରଣ :

ଓମ୍ ପ୍ରକାଶନ ମନ୍ଦିର, ପୁରୀ

ମୂଲ୍ୟ : ଟ ୬୦.୦୦ଙ୍କା ମାତ୍ର

॥ ଓଁ ଶ୍ରୀଗୁରୁଭ୍ୟୋ ନମଃ ॥

# ସମର୍ପଣ

ବାଲ୍ୟକାଳରେ ଯେଉଁ ମହନୀୟ ମହାପୁରୁଷଙ୍କ ମୁଖରୁ ପବିତ୍ର ସଂସ୍କୃତ ଭାଷାର ମୌଳିକ ତଥ୍ୟ ଏବଂ ମହତ୍ତ୍ୱ ସମ୍ବନ୍ଧରେ ଅନ୍ତେବାସିନୀରୂପେ ପ୍ରଥମେ ଶୁଣିବାର ସୁଯୋଗ ପାଇଥିଲି  ଏବଂ ଯାହାଙ୍କ ନିଷ୍କପଟ ଅହେତୁକ ସ୍ନେହ, ଶ୍ରଦ୍ଧା ଓ ସହାନୁଭୂତିପୂର୍ଣ୍ଣ ଶୁଭାଶୀର୍ବାଦ ବଳରେ ମୁଁ ଜୀବନରେ ବିଦ୍ୟାର୍ଜନ ପୂର୍ବକ ଆଧ୍ୟାତ୍ମିକମାର୍ଗଗାମୀ ହୋଇ ଅଧ୍ୟାପନାରେ ସଫଳତା ଅର୍ଜନ କରିପାରିଛି, ସେହି ପରମେଶ୍ୱର ପ୍ରତିମୂର୍ତ୍ତି, ଆଡମ୍ବରଶୂନ୍ୟ, ନିରହଙ୍କାର ସ୍ୱଭାବ, ଗଭୀର ଅନୁଭବସମ୍ପନ୍ନ, ସଂସ୍କୃତ ବିଦ୍ୱାନ୍ ପୂଜ୍ୟ ବିଦ୍ୟାଗୁରୁ **ପଣ୍ଡିତ ମାୟାଧର ନାୟକ**ଙ୍କ ପବିତ୍ର କରକମଳରେ ସ୍ୱରଚିତ ଏହି କ୍ଷୁଦ୍ର ଗ୍ରନ୍ଥ ପୁଷ୍ପଟିକୁ ନୈବେଦ୍ୟ ରୂପରେ ଅର୍ପଣ କରି ମୁଁ ଅପୂର୍ବ ଆତ୍ମପ୍ରସାଦ ଅନୁଭବ କରୁଅଛି ।

ଶ୍ରୀଗୁରୁକୃପା ପ୍ରାର୍ଥିନୀ

**ଜୟଶ୍ରୀ**

प्रो. डॉ. प्रभातरञ्जनमहापात्रः
अद्वैतवेदान्ताचार्यः, विद्यावारिधिः
आचार्यः, स्नातकोत्तर-अद्वैतवेदान्तविभागः
श्रीजगन्नाथसंस्कृतविश्वविद्यालयः, श्रीविहारः, पुरी - ३

Dr. Pravat Ranjan Mohapatra
Professor of Advaita Vedanta
Sri Jagannath Sanskrit Vishva Vidyalaya
Sri Vihar, Puri, Orissa
*Ph - (06752) 229205 (Res), 9437559205 (M)*

# ଅଭିମତ

ଅପୂର୍ବ ଧୀଶୀଶକ୍ତି ତଥା ବିଲକ୍ଷଣ ଆଧ୍ୟାତ୍ମ ଚିନ୍ତନ ଶକ୍ତିର ଅଧିକାରିଣୀ ତଥା ନିରବ କର୍ମତତ୍ପରା ମୋର ଅନ୍ତେବାସିନୀ ଅଧ୍ୟାପିକା ଜୟଶ୍ରୀ ନନ୍ଦଙ୍କଦ୍ୱାରା ପ୍ରଣୀତ ''ଈଶ୍ୱରଗୀତା'' ଶୀର୍ଷକ ସ୍ମୃତି ପ୍ରସ୍ଥାନ ଅନ୍ତର୍ଗତ ଈଶ୍ୱରଗୀତା ଗ୍ରନ୍ଥର ଭାବାନୁବାଦକୁ ଆମୂଳଚୂଳ ଅବଲୋକନ କରି ମୁଁ ଅନୁଭବ କଲି ଯେ, ଏହି ଗ୍ରନ୍ଥଟି ସମସ୍ତ ଉପନିଷଦ୍‌ର ସାରତତ୍ତ୍ୱକୁ ସରଳ ଭାଷାରେ ନିରୂପଣ କରୁଥିବା ଏକ ମୌଳିକ ଗ୍ରନ୍ଥ । ଯଦ୍ୟପି ମହାଭାରତ ଭୀଷ୍ମପର୍ବ ଅନ୍ତର୍ଗତ ଶ୍ରୀମଦ୍‌ଭଗବଦ୍‌ଗୀତା ସାକ୍ଷାତ୍ ଶ୍ରୀହରିଙ୍କ ମୁଖନିଃସୃତ ଏବଂ ବ୍ରହ୍ମବିଦ୍ୟାରୂପିଣୀ ବୋଲି ପ୍ରସିଦ୍ଧିଲାଭ କରିଅଛି, ତଥାପି କୂର୍ମପୁରାଣ ଅନ୍ତର୍ଗତ ଈଶ୍ୱରଗୀତାର ସମୀକ୍ଷାତ୍ମକ ଗ୍ରନ୍ଥଟିକୁ ଅଧ୍ୟୟନ କଲେ ଅଧ୍ୟାତ୍ମତତ୍ତ୍ୱ ଜିଜ୍ଞାସୁ ମାନବ ମନର ସକଳ ପ୍ରକାର ସଂଶୟ ଅନାୟାସରେ ଦୂରୀଭୂତ ହୋଇପାରିବ । ଏକଥା ଡଃ ଜୟଶ୍ରୀ ନନ୍ଦ ସ୍ୱରଚିତ ଗ୍ରନ୍ଥରେ ସ୍ପଷ୍ଟ ଭାବରେ ପ୍ରତିପାଦନ କରିଛନ୍ତି । ସେହି ଦୃଷ୍ଟିରୁ ବିଚାର କଲେ ଶ୍ରୀମଦ୍‌ଭଗବଦ୍‌ଗୀତା ଓ ଈଶ୍ୱରଗୀତା ମଧ୍ୟରେ ଅନେକ ସିଦ୍ଧାନ୍ତ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ଏକଥା ସେ ଭୂମିକାରେ ସ୍ପଷ୍ଟ କରିଛନ୍ତି । ଦିବ୍ୟଜ୍ଞାନଦ୍ୱାରା ମହାମୋହ ଅନାୟାସରେ ନଷ୍ଟ ହୁଏ । ଏହି ମୌଳିକ ରହସ୍ୟ ଈଶ୍ୱରଗୀତାର ମୁଖ୍ୟ ପ୍ରତିପାଦ୍ୟ ବିଷୟ ବୋଲି ସେ ଗ୍ରନ୍ଥରେ ପ୍ରତିପାଦନ କରିଛନ୍ତି । ମୁଖ୍ୟତଃ ଶିବ ଓ ବିଷ୍ଣୁ ମଧ୍ୟରେ ପାରମାର୍ଥିକ ଏକତ୍ୱ ପ୍ରତିପାଦନ କରିବା ଈଶ୍ୱରଗୀତାର ମୁଖ୍ୟ ଉଦ୍ଦେଶ୍ୟ ବୋଲି ସେ ଗଭୀରରୂପେ ହୃଦୟଙ୍ଗମ କରି, ସେହିଭଳି ଭାବରେ ଶ୍ଳୋକଗୁଡ଼ିକର ଅବିକଳ ଅନୁବାଦ କରିଛନ୍ତି । ଅଦ୍ୱିତୀୟ ବ୍ରହ୍ମସତ୍ତା ହିଁ ଜୀବନର ଚରମଲକ୍ଷ୍ୟ । ଉପନିଷଦୀୟ ସୂକ୍ଷ୍ମ ବିଚାରଧାରା ଏହି ଭାବାନୁବାଦ ଗ୍ରନ୍ଥରେ ପ୍ରତିଫଳିତ ହୋଇଛି । ଜିଜ୍ଞାସୁ ପାଠକବୃନ୍ଦ ଏହାକୁ ଅଧ୍ୟୟନ କରି ସ୍ୱଜୀବନଗତ ମୌଳିକ ସମସ୍ୟାର ସମାଧାନ ଅନାୟାସରେ କରିପାରିବେ ବୋଲି ମୋର ଦୃଢ଼ ଆତ୍ମବିଶ୍ୱାସ ।

ଡଃ ନନ୍ଦଙ୍କର ବିଭୁକୃପା ପ୍ରାପ୍ତ ବିଲକ୍ଷଣ ସାରସ୍ୱତ ପ୍ରୟାସ ସର୍ବଦା ଅବ୍ୟାହତ ରହିଥାଉ, ଏହା ହିଁ ପରମାତ୍ମାଙ୍କଠାରେ ମୋର ନିବେଦନ ।

ପ୍ରଭାତରଞ୍ଜନ ମହାପାତ୍ର

(ପ୍ରଫେସର ପ୍ରଭାତରଞ୍ଜନ ମହାପାତ୍ର)

# ଭୂମିକା

ଆଧ୍ୟାତ୍ମିକ, ଆଧିଭୌତିକ, ଆଧିଦୈବିକ ତିନିପ୍ରକାର ଦୁଃଖଦ୍ୱାରା ସନ୍ତପ୍ତ ସାଂସାରିକ ଜୀବମାନଙ୍କୁ ଉଦ୍ଧାର କରିବା ପାଇଁ ସ୍ୱୟଂ ଜଗଦୀଶ୍ୱର ବେଦରେ ଆଧ୍ୟାତ୍ମିକ ଜ୍ଞାନଦ୍ୱାରା ପରିପୂର୍ଣ୍ଣ ଅନେକ ପ୍ରକାର ଉପଦେଶ, ମନ୍ତ୍ର ଏବଂ ବ୍ୟାଖ୍ୟାନ ସ୍ୱରୂପ ବ୍ରାହ୍ମଣ ଗ୍ରନ୍ଥରେ ମୁନିଋଷିମାନଙ୍କଦ୍ୱାରା ପ୍ରକାଶିତ କରିଛନ୍ତି । ଯାହାକୁ କି ଉପନିଷଦ୍ ବା ବ୍ରହ୍ମବିଦ୍ୟା ନାମରେ ହିଁ ନାମିତ କରାଯାଇଛି । ଏହି ଉପନିଷଦ୍ ବିଦ୍ୟା ଅତ୍ୟନ୍ତ ଗୋପନୀୟ ଏବଂ ସମସ୍ତ ଗ୍ରନ୍ଥର ଶିରୋମୁକୁଟ ସଦୃଶ ଅଟେ । ତେଣୁ ଏହାକୁ ଅଧ୍ୟୟନ ଏବଂ ମନନ ବିନା ଜନନ ମରଣ ରୂପ ସଂସାରର ଅନାଦି ଦୁଃଖ ଯାତନା କେବେହେଲେ ଜୀବନକୁ ଛାଡିପାରେ ନାହିଁ । ମୁଖ୍ୟତଃ ଉପନିଷଦ୍ ଗ୍ରନ୍ଥରେ ଜୀବବ୍ରହ୍ମର ଏକତା, ସୃଷ୍ଟିର ବିକସନ ଓ ସଂକୋଚନ ତଥା ଏହାର ପରସ୍ପର ସମ୍ବନ୍ଧର ନିରୂପଣ ସବୁ ପ୍ରକାଶିତ ହୋଇଛି । ମୁଖ୍ୟ ପ୍ରୟୋଜନ ସାଂସାରିକ ନିବୃତ୍ତି, କାରଣ ସଂସାର ବିନା ଦୁଃଖ ନିବୃତ୍ତି ଓ ସୁଖପ୍ରାପ୍ତି ସମ୍ଭବ ନୁହେଁ ''ବ୍ରହ୍ମବିଦାପ୍ନୋତିପରମମ୍'' । ଉପନିଷଦର ପ୍ରଚାର ବୈଦିକ ସମୟରେ ଭାରତ ବର୍ଷର ପ୍ରତ୍ୟେକ ଘରେ ଘରେ ହେଉଥିଲା । ବିଶେଷତଃ ନିବୃତ୍ତିପରାୟଣ ମହର୍ଷିଗଣ ନିଜ ନିଜ ପୁତ୍ରମାନଙ୍କୁ ଏହି ବିଦ୍ୟା ଶିକ୍ଷା ଦେଉଥିଲେ । ଯଦି କେଉଁ ଅଧିକାରୀ ପୁରୁଷ ଶିକ୍ଷାଲାଭ ପାଇଁ ଆସନ୍ତି ତାଙ୍କୁ ପୂର୍ଣ୍ଣରୂପରେ ପରୀକ୍ଷା କରି ବ୍ରହ୍ମବିଦ୍ୟା ରହସ୍ୟ ଶିକ୍ଷା ଦେଉଥିଲେ । କର୍ମମାର୍ଗରେ ବ୍ୟସ୍ତ ରହି ମଧ ମନୁଷ୍ୟ ବ୍ରହ୍ମବିଦ୍ୟାର ଅଧିକାରୀ ହୋଇପାରୁଥିଲେ । ନିଷ୍କାମ କର୍ମଯୋଗ ମାଧମରେ ଉପନିଷଦ୍ ପ୍ରତିପାଦ୍ୟ ବ୍ରହ୍ମଜ୍ଞାନ ବିଚାର କରାଯାଇଥାଏ ।

ଧୀରେ ଧୀରେ ଏହି ପ୍ରକାରର ପ୍ରଚାର ନ୍ୟୂନତା ପ୍ରାପ୍ତ ହେଲା, ଫଳରେ ଉପନିଷଦ୍ ଗ୍ରନ୍ଥର ପଠନ ଓ ପାଠନ ଦୁର୍ଲଭ ହୋଇଗଲା । ଗୀତାଶାସ୍ତ୍ରର ଉଦ୍‌ଭବ ଓ ବିକାଶ ପ୍ରାରମ୍ଭ ହେଲା । ଉପନିଷଦ୍ ଶାସ୍ତ୍ରଠାରୁ ଅଧିକ ସରଳ, ସୁବୋଧ, ସୁଗମ୍ୟ ଭାବରେ ଉପନିଷତ୍ ପ୍ରତିପାଦ୍ୟ ବ୍ରହ୍ମବିଦ୍ୟା ମୁନିଋଷିଗଣ ଗୀତାଶାସ୍ତ୍ରରେ ବର୍ଣ୍ଣନା କଲେ । ଯେପରି ଉପନିଷତ୍ ସଂଖ୍ୟା ଅନେକ ହୋଇଥିଲା, ସେପରି ଗୀତାଶାସ୍ତ୍ର ମଧ ଅନେକ ହୋଇ ଉଠିଲା । ଯେପରି ପଞ୍ଚମବେଦ ସ୍ୱରୂପ ମହାଭାରତ ଗ୍ରନ୍ଥରୁ ସୃଷ୍ଟି ହେଲା ଶ୍ରୀମଦ୍‌ଭଗବଦ୍‌ଗୀତା, ସେପରି କୂର୍ମପୁରାଣର ଉତ୍ତରାର୍ଦ୍ଧ ଭାଗରୁ ସୃଷ୍ଟି ହେଲା **''ଈଶ୍ୱରଗୀତା''** । ଏଗାର ଅଧ୍ୟାୟ ଓ ୪୯୬ ଶ୍ଲୋକ ବିଶିଷ୍ଟ ବେଦାନ୍ତ ତଥା ସାଂଖ୍ୟ ଦର୍ଶନର ଉଚ୍ଚଶ୍ରେଣୀୟ ଉପଦେଶଦ୍ୱାରା ପରିପୂର୍ଣ୍ଣ । ଅନ୍ତିମ ଅଧ୍ୟାୟରେ ଯୋଗ ଏବଂ

ସଂକ୍ଷେପରେ ପାଶୁପତଦର୍ଶନର ପରିଚୟ ଦିଆହୋଇଛି । ଶ୍ରୀମଦ୍‌ଭଗବଦ୍‌ଗୀତାଠାରୁ ମଧ୍ୟ ଏହି ଈଶ୍ୱରଗୀତା ଅଧିକ ପ୍ରାଚୀନତମ ବୋଲି କେତେକ ସୂଚନାରୁ ମିଳେ । ଯଥା ଏକାଦଶ ଅଧ୍ୟାୟର ୧୩୧ ଓ ୧୩୨ ଶ୍ଳୋକରେ ଲିଖିତ ଅଛି ଯେ -

ନାରାୟଣୋଽପି ଭଗବାନ୍ ଦେବକୀତନୟୋ ହରି ।
ଅର୍ଜୁନାୟ ସ୍ୱୟଂ ସାକ୍ଷାଦ୍ଦତ୍ତବାନିଦମୁତ୍ତମମ୍ ॥

ଯେପରି ଭଗବାନ୍ ଶଙ୍କରଠାରୁ ଈଶ୍ୱରଗୀତାର ରହସ୍ୟ ଶୁଣି ସମସ୍ତ ମୁନିଋଷିମାନେ ଶିଷ୍ୟପ୍ରଶିଷ୍ୟଙ୍କଦ୍ୱାରା ପ୍ରଚାର କରିଥିଲେ, ସେପରି ଦ୍ୱାପର ଯୁଗର ଅନ୍ତଃ ସମୟରେ ଭଗବାନ୍ ଶ୍ରୀକୃଷ୍ଣ ନିଜର ଯୋଗ୍ୟତମ ଶିଷ୍ୟ ଶ୍ରୀମାନ୍ ଅର୍ଜୁନଙ୍କୁ କର୍ମଯୋଗର ରହସ୍ୟ ଶ୍ରୀମଦ୍‌ଭଗବଦ୍‌ଗୀତା ମାଧ୍ୟମରେ ଶୁଣାଇ ଧନ୍ୟ କରିଥିଲେ । ଈଶ୍ୱରଗୀତା ଶ୍ରୀମଦ୍‌ଭଗବଦ୍‌ଗୀତା ଅପେକ୍ଷା କ୍ଷୁଦ୍ରରୂପ ଥିଲା, ତଥାପି ସୂକ୍ଷ୍ମଭାବରେ ସମସ୍ତ ତତ୍ତ୍ୱ ଏହାର କ୍ଷୁଦ୍ର କଳେବର ମଧ୍ୟରେ ନିହିତ ରହିଛି । ଏଥିରୁ ଜଣାପଡେ ଈଶ୍ୱରଗୀତାର ତତ୍ତ୍ୱକୁ ବିସ୍ତୃତ ଭାବରେ ଜନସାଧାରଣଙ୍କର ବୋଧଗମ୍ୟ ପାଇଁ ଶ୍ରୀମଦ୍‌ଭଗବଦ୍‌ଗୀତାର ସୃଷ୍ଟି । ଈଶ୍ୱରଗୀତାର ଅନେକ ଶ୍ଳୋକ ଶ୍ରୀମଦ୍‌ଭଗବଦ୍‌ଗୀତାରେ ଅନୁରୂପ ମିଳିଥାଏ । ଏହା ହିଁ ଈଶ୍ୱରଗୀତାର ଶ୍ରୀମଦ୍‌ଭଗବଦ୍‌ଗୀତାଠାରୁ ପ୍ରାଚୀନତମ ବୋଲି ପ୍ରମାଣ । ଏହାର ରଚନାଶୈଳୀ ମଧ୍ୟ ବହୁତ ପ୍ରାଚୀନ ଅଟେ । ଯେପରି ଅଦ୍ୱୈତ ଜ୍ଞାନର ସ୍ୱରୂପ ଏହି ଦୁଇ ଗୀତାରେ ପ୍ରତିଷ୍ଠିତ ତାହା ଅନ୍ୟ କେଉଁ ଗୀତାରେ ଦେଖାଯାଏ ନାହିଁ । ଈଶ୍ୱରଗୀତାରେ ମହାଦେବ ଏବଂ ନାରାୟଣଙ୍କୁ ଏକ ଓ ଅଭିନ୍ନ ଭାବରେ ଗ୍ରହଣ କରିବା ଏହି ଗୀତାର ବୈଶିଷ୍ଟ୍ୟ ଅଟେ ।

ଈଶ୍ୱରଗୀତାରେ ଶୈବ ଓ ବୈଷ୍ଣବ ସମ୍ପ୍ରଦାୟର ଭେଦତା ନିରାକରଣ କରି ଦୁଇ ସମ୍ପ୍ରଦାୟକୁ ଏକତା ସୂତ୍ରରେ ଗୁନ୍ଥି ଆର୍ଯ୍ୟଧର୍ମର ଆଦିମ ସିଦ୍ଧାନ୍ତ ଅଦ୍ୱୈତ ନିଷ୍ଠାର ପରିଚୟ ପ୍ରଦାନ କରାଯାଇଛି । ଯଦ୍ୟପି ଏହି ଗୀତାରେ ନିରାକାରବ୍ରହ୍ମରୂପ ଶିବତତ୍ତ୍ୱର ଉପଦେଶ ଦିଆଯାଇଛି । ତଥାପି ପରମାତ୍ମାଙ୍କର ସୁଗୁଣରୂପର ଯଥାର୍ଥ ବିବେଚନ କରାଯାଇଛି । ଉଚ୍ଚଶ୍ରେଣୀର ଜ୍ଞାନୋପଦେଶ ସହିତ ଭକ୍ତିମାର୍ଗ, ଯୋଗାଭ୍ୟାସର ମହତ୍ତ୍ୱ ପ୍ରଦାନ କରାଯାଇଛି । ନାନା ପ୍ରକାରର ଉପାସନା ହିଁ ଏକ ବ୍ରହ୍ମର ଉପାସନା ଅଟେ । ଯେ କେହି ଉପାସକ ଯେ କୌଣସି ଉପାୟରେ ଈଶ୍ୱର ଉପାସନା କରି ଶ୍ରେଷ୍ଠତ୍ୱ ପ୍ରାପ୍ତ ହୋଇପାରିବ । ଏହି ପରମ ଉଦାର ଧର୍ମର ପ୍ରତିପାଦନ ସୁନ୍ଦର ଶବ୍ଦରେ ବର୍ଣ୍ଣନା କରାଯାଇଛି । ଏହି ଗୀତା ସମନ୍ୱୟ ଧର୍ମର ପକ୍ଷପାତି ଅଟେ ତଥା ପ୍ରମୁଖ ଭାବରେ କୌଣସି ସମ୍ପ୍ରଦାୟର ବର୍ଣ୍ଣନା ଦେଖାଯାଏ ନାହିଁ ।

---*---

# ଈଶ୍ୱରଗୀତା କଥାସାର

''ଈଶ୍ୱରଗୀତା'' କୂର୍ମପୁରାଣର ଉତ୍ତରଭାଗର ପ୍ରଥମ ଏଗାର ଅଧ୍ୟାୟରେ ଅବସ୍ଥିତ । ଏହି ଶ୍ଳୋକଗୁଡିକ ଅନୁଷ୍ଟପ୍ ଛନ୍ଦରେ ଲିଖିତ ଯାହା ଭାଷାରେ ସରଳ ଓ ବୋଧଗମ୍ୟ ଅଟେ । ଗ୍ରନ୍ଥ ଆରମ୍ଭରେ ଶ୍ରୀସନତ୍‌କୁମାର ତଥା ଅନ୍ୟ ମହର୍ଷିମାନେ ଭଗବାନ୍ ଶ୍ରୀବିଷ୍ଣୁଙ୍କୁ ସ୍ୱରୂପାତ୍ମକ ସଂସାରରେ ଉତ୍ପତ୍ତିର କାରଣ, ଜୀବନ ତଥା ମରଣ ସହ ଲିପ୍ତ ତତ୍ତ୍ୱ, ଆତ୍ମତତ୍ତ୍ୱ, ମୁକ୍ତିର ସତ୍ତା ଓ ସଂସାରର ନିମିତ୍ତ କାରଣ, ସଂସାରର ସ୍ୱାମୀ, ଜଗତର ସାକ୍ଷୀ ରୂପ ଦ୍ରଷ୍ଟା, ତଥା ଜନ୍ମ ତତ୍ତ୍ୱର ସ୍ୱରୂପ ବିଷୟରେ ବିସ୍ତୃତ ଜିଜ୍ଞାସା କରିଥିଲେ । ସେତେବେଳେ ଶ୍ରୀଶଙ୍କର ଜିଜ୍ଞାସୁଙ୍କର ଅଭିଳାଷ ପୂର୍ଣ୍ଣ କରିବା ପାଇଁ ସ୍ୱୟଂ ପ୍ରକଟ ହେଲେ ଏବଂ ନିଜର ଅମୃତମୟ ଉପଦେଶ ଆରମ୍ଭ କଲେ । ସେ ମହର୍ଷିମାନଙ୍କ ଜିଜ୍ଞାସା ଅନୁସାରେ ଜ୍ଞାନଯୋଗ ଏବଂ କର୍ମଯୋଗର ସିଦ୍ଧାନ୍ତ ବୁଝାଇ ଜ୍ଞାନଯୋଗର ଶ୍ରେଷ୍ଠତା ପ୍ରତିପାଦନ କରିଛନ୍ତି ।

ଆର୍ଯ୍ୟଭୂମି ଭାରତଭୂମି ଋଷିମାନଙ୍କର ଆବାସ ସ୍ଥଳୀ । ଏହି ପବିତ୍ର ଭୂମିରେ ପରମ ପବିତ୍ର ବ୍ରହ୍ମର୍ଷି, ଦେବର୍ଷି ନାନା ଜ୍ଞାନର ଗାରିମା ବଖାଣି ଯାଇଛନ୍ତି ଯେ ବେଦର ତିନୋଟି ପ୍ରକାରର ବର୍ଣ୍ଣନ କର୍ମ, ଜ୍ଞାନ ଓ ଉପାସନା ମାଧମରେ ବ୍ରହ୍ମପ୍ରାପ୍ତିର ସିଦ୍ଧାନ୍ତ ପ୍ରତିପାଦନ ବର୍ଣ୍ଣନ ହୋଇଛି । ମାନବ ଆବଶ୍ୟକତା ଯୋଗ୍ୟତା ଅନୁସାରେ ସମ୍ପୂର୍ଣ୍ଣ ସାଧନାର ଆଶ୍ରୟରେ ପରମପୁରୁଷାର୍ଥ ପ୍ରାପ୍ତି ହୋଇଥାଏ । ଯେହେତୁ ବ୍ରହ୍ମ ସାକ୍ଷାତ୍‌କାର ବେଦର ଅନ୍ତିମ ତାତ୍ପର୍ଯ୍ୟ ସମନ୍ୱିତ ଅଟେ । ମହର୍ଷି ଦେବବ୍ୟାସଙ୍କର ବିରଚିତ ବ୍ରହ୍ମସୂତ୍ର ଗ୍ରନ୍ଥର ପ୍ରଥମ ଅଧ୍ୟାୟ ଚତୁର୍ଥ ଅଧିକରଣରେ ''ତତ୍ତୁ ସମନ୍ୱୟାତ୍'' ସୂତ୍ରରେ ବର୍ଣ୍ଣନ ହେଉଛି ଏହାର ଶ୍ରେଷ୍ଠ ପ୍ରମାଣ । ଯଦିବା ତତ୍ତୁ ସମନ୍ୱୟାତ୍ ଉପନିଷଦ୍ ରୂପରେ ଏହି ବ୍ରହ୍ମବିଦ୍ୟାର ପ୍ରାଦୁର୍ଭାବ ପୂର୍ବରୁ ବର୍ଣ୍ଣନ ରହିଛି ଯେଉଁଠି ଅନେକ ପ୍ରକାରର ବ୍ରହ୍ମ ନିରୂପଣ ବ୍ୟବସ୍ଥା ରହିଛି । ଏହା ଆତ୍ୟନ୍ତିକ ସୁଖାନୁଭବ ପାରମାର୍ଥିକ ଶାନ୍ତିପ୍ରଦ ତଥାପି କାଳକ୍ରମାନୁସାରେ ସାମାଜିକ ଅବସ୍ଥାକୁ ନେଇ ବ୍ୟାବହାରିକ ସମାଜରେ ବ୍ରହ୍ମଜ୍ଞାନର ବୈଦିକବ୍ୟବସ୍ଥା ସାଧାରଣ ବୋଧଗମ୍ୟ ପାଇଁ କଠିନତର ହୋଇଯାଇଥିବାରୁ ଶ୍ରୋତଜ୍ଞାନକୁ ସରଳ ସୁବୋଧ ଭାବରେ ବ୍ୟାଖ୍ୟା କରି ସାଧାରଣ ଜନସମାଜକୁ ଅନୁଭବ ପାଇଁ ଅନେକ ପ୍ରକାର ଗୀତାଗ୍ରନ୍ଥ ନିର୍ମାଣ କରାଗଲା ।

ଏହାଦ୍ୱାରା ସ୍ପଷ୍ଟ ଜଣାପଡୁଛି ଯେ ଉପନିଷଦ୍ ଭାଗର ବିଶଦ ବର୍ଣ୍ଣନା ଗୀତାଗ୍ରନ୍ଥର ଏକମାତ୍ର ଉଦ୍ଦେଶ୍ୟ । 'ଗୀତା' ଶବ୍ଦ ସହ ସ୍ତ୍ରୀଲିଙ୍ଗ ରୂପରେ 'ଉପନିଷଦ୍' ସଂଜ୍ଞା ପ୍ରଯୁକ୍ତତା ସିଦ୍ଧ କରୁଛି ଯେ ଗୀତାର ମୂଳରୂପ ଉପନିଷଦ୍ ତତ୍ତ୍ୱରୁ ସୃଷ୍ଟି । ବେଦର ଶିରଭାଗ, ଅନ୍ତିମଭାଗର ସାରତତ୍ତ୍ୱ ଉପନିଷଦ୍ । ଯେତେବେଳେ ଗୀତା ଗ୍ରନ୍ଥର ସୃଷ୍ଟି ହେଲା ବ୍ୟାବହାରିକ ଭାବରେ ବେଦକୁ ଶ୍ରୁତି ଓ ଗୀତାକୁ ସ୍ମୃତି ସଂଜ୍ଞା ଦିଆଗଲା । ଗୀତାଗ୍ରନ୍ଥ ମଧ୍ୟରେ ସର୍ବୋତ୍ତମ ଖ୍ୟାତି ବିଶିଷ୍ଟ ଶ୍ରୀମଦ୍‌ଭଗବଦ୍‌ଗୀତା ଉପନିଷଦ ତତ୍ତ୍ୱ ବିଶିଷ୍ଟ ବୋଲି ପ୍ରମାଣିତ ହେଲା ଏବଂ ଏହା ହିଁ କାରଣ ଅଟେ ଯେ ସାଧାରଣ ବ୍ୟବହାରରେ ଗୀତା ନାମ ଉଚ୍ଚାରଣ ମାତ୍ରେ ଶ୍ରୀମଦ୍‌ଭଗବଦ୍‌ଗୀତାର ସ୍ମୃତି ମାନସ ପଟଳରେ ଅଙ୍କିତ ହୋଇଯାଏ । ଜନସାଧାରଣରେ ଯାହା କିଛି ଧାରଣା ଗୀତା ବିଷୟରେ ରହିଛି ତାହା ଅନ୍ୟ ଗୀତା ଗ୍ରନ୍ଥ ବିଷୟରେ ଜାଣିବାର ଅବସରପ୍ରାପ୍ତ ହୋଇ ନଥାଏ । ସଂସ୍କୃତ ସାହିତ୍ୟରେ ଉପନିଷଦ୍ ପରେ ଆଧ୍ୟାତ୍ମିକ ତତ୍ତ୍ୱକୁ ବିସ୍ତୃତ ରୂପରେ ବର୍ଣ୍ଣନା କରିବା ଦାୟିତ୍ୱ ଗୀତା ମାଧ୍ୟମରେ ବ୍ୟବହାର କରାଗଲା ।

ସଂସ୍କୃତ ସାହିତ୍ୟରେ 'ଗୀତା' ଭାବରେ ସମ୍ବୋଧିତ ଗ୍ରନ୍ଥସଂଖ୍ୟା ବହୁତ ବଢିଯାଇଛି । ଯେପରି ଶିବଗୀତା, ଗଣେଶଗୀତା, ଅବଧୂତଗୀତା, ବ୍ୟାସଗୀତା – ଏହିପରି ଅନେକ ଗୀତାଗ୍ରନ୍ଥ ମଧ୍ୟରେ 'ଈଶ୍ୱରଗୀତା'ର ମଧ୍ୟ ବିଶିଷ୍ଟ ସ୍ଥାନ ରହିଛି । ଯେପରି ଶ୍ରୀମଦ୍‌ଭଗବଦ୍‌ଗୀତା ମହାଗ୍ରନ୍ଥ ମହାଭାରତର ଏକ ଉପାଖ୍ୟାନ ମାତ୍ର, ସେପରି ଈଶ୍ୱରଗୀତା ମଧ୍ୟ ସ୍ୱତନ୍ତ୍ର ଗ୍ରନ୍ଥ ନୁହେଁ ଏହା କୂର୍ମାବତାରଧାରୀ ଭଗବାନ୍ ବିଷ୍ଣୁଙ୍କଦ୍ୱାରା କଥିତ କୂର୍ମପୁରାଣ ଅନ୍ତର୍ଗତ ଅଟେ ।

ସନକ, ସନନ୍ଦନ, ସନତ୍‌କୁମାର, ସନାତନ ଆଦି ମହର୍ଷିମାନଙ୍କ ପାଇଁ ଭଗବାନ୍ ମହାଦେବଙ୍କଦ୍ୱାରା ପ୍ରତିପାଦିତ ତତ୍ତ୍ୱଜ୍ଞାନ ରୂପରେ ଏକ ଉତ୍କୃଷ୍ଟ ପ୍ରସଙ୍ଗ । ଏହି ପ୍ରସଙ୍ଗକୁ ଉଲ୍ଲେଖ କରି ମହର୍ଷି ବ୍ୟାସଦେବ କହିଛନ୍ତି --

**ନାରାୟଣୋଽପି ଭଗବାନ୍‌ଦେବକୀ ତନୟୋ ହରି ।**
**ଅର୍ଜୁନାୟ ସ୍ୱୟଂ ସାକ୍ଷାଦ୍ଦତ୍ତବାନିଦମୁତ୍ତମମ୍ ॥**

(ଈ.ଗୀ. ୧୧/୧୩୧,୧୩୨)

ଉପର୍ଯ୍ୟୁକ୍ତ ଦୁଇପଦରେ ପ୍ରତିପାଦିତ କରାଗଲା ଯେ ''ଈଶ୍ୱରଗୀତା''ରେ ପ୍ରତିପାଦିତ ଜ୍ଞାନ ଯାହା ଶ୍ରୀଭଗବାନ୍ ଶ୍ରୀକୃଷ୍ଣ ମହାଭାରତ ଯୁଦ୍ଧକ୍ଷେତ୍ରରେ ଶ୍ରୀମାନ୍ ଅର୍ଜୁନଙ୍କୁ ଶୁଣାଉଥିଲେ । ତେଣୁ ଶ୍ରୀମଦ୍‌ଭଗବଦ୍‌ଗୀତା ଓ ଈଶ୍ୱରଗୀତା ମଧ୍ୟରେ ଅନେକ ସମାନତା ଜଣାଯାଇଥିବା ସହ ଦୁଇ ଗୀତାରେ ସମାନ ଭାବରେ ଜ୍ଞାନ,

କର୍ମ ଓ ଭକ୍ତିର ସାର୍ଥକତା ପ୍ରମାଣିତ କରାଯାଇଛି । କେବଳ ଏତିକିମାତ୍ର ବିଷମତା ଯେ ଈଶ୍ୱରଗୀତାରେ ମହର୍ଷିମାନଙ୍କ ଜ୍ଞାନବିଷୟକ ଆକାଙ୍‌କ୍ଷା ହୋଇଥିବାରୁ ଜ୍ଞାନଯୋଗର ପ୍ରାଧାନ୍ୟତା ରହିଛି । ସେପରି ଶ୍ରୀମଦ୍‌ଭଗବଦ୍‌ଗୀତାରେ ଅର୍ଜୁନଙ୍କର କର୍ତ୍ତବ୍ୟ ସମ୍ବନ୍ଧିତ ମୋହଜାଲ ନଷ୍ଟ କରିବା ନିମନ୍ତେ ନିଜର ପରିବର୍ତ୍ତିତ ରୂପରେ କର୍ମଯୋଗର ପ୍ରମୁଖ ସ୍ଥାନ ଦିଆଯାଇଛି ।

ଈଶ୍ୱରଗୀତାରେ ଯଦ୍ୟପି ବେଦାନ୍ତ, ସାଂଖ୍ୟ, ଯୋଗ ବିଭିନ୍ନ ଦର୍ଶନକୁ ମନ୍ଥନ କରି ସାରତତ୍ତ୍ୱ ବାହାର କରାଯାଇଛି ତଥାପି ବେଦାନ୍ତ ବିଚାର ଏଠାରେ ଅଧିକ ସ୍ଥାନ ପାଇଛି । ଈଶ୍ୱରଗୀତାର ଷଷ୍ଠ ଏବଂ ଏଗାର ଅଧ୍ୟାୟ ଅତ୍ୟନ୍ତ ବିଲକ୍ଷଣ ଅଟେ । ଏହି ଅଧ୍ୟାୟରେ ଈଶ୍ୱରଙ୍କର ଜଗତ ଆଚ୍ଛାଦନର ମହତ୍ତ୍ୱ ଓ ରାଜଯୋଗ ରହିଛି ଏବଂ ଏହାକୁ ବାରମ୍ବାର ମନନ କରାଯାଇଛି । ଏହା ନିଶ୍ଚିତ ଧ୍ରୁବସତ୍ୟ ଯେ ଆଧାତ୍ମିକ ସତ୍ୟତାର ଗୂଢ ରହସ୍ୟ ଓ ସରଳଭାବରେ ବ୍ୟାଖ୍ୟା ଶ୍ରୀମଦ୍‌ଭଗବଦ୍‌ଗୀତା ସଦୃଶ ଏହି ଗୀତାରେ ମଧ କରାଯାଇଛି । ତେଣୁ ଶ୍ରୀମଦ୍‌ଭଗବଦ୍‌ଗୀତା ପରବର୍ତ୍ତି ସ୍ଥାନ ନିଶ୍ଚିତ ଈଶ୍ୱରଗୀତା ଏହା ନିଶ୍ଚିତ ।

ଏହି ଈଶ୍ୱରଗୀତାର ପ୍ରଧାନ ବିଷୟ ବ୍ରହ୍ମ, ଜୀବ ଓ ଜଗତର ସ୍ୱରୂପ ତଥା ପାରସ୍ପାରିକ ସୁସମ୍ବନ୍ଧ ପ୍ରତିପାଦନ କରାଯାଇଛି । ଯେପରି ଶ୍ରୀମଦ୍‌ଭଗବଦ୍‌ଗୀତା ଅନ୍ତର୍ଗତ ବୈଦିକ ଅଦ୍ୱୈତ ତତ୍ତ୍ୱଜ୍ଞାନ ଭାଗ ବଡ ତତ୍ତ୍ୱ ସହ ସାମଞ୍ଜସ୍ୟ ରହିଛି । ସେପରି ଈଶ୍ୱରଗୀତା ତତ୍ତ୍ୱ ସହ ଶୈବ, ପାଶୁପତ ଧର୍ମର ବେଦ ସହ ଅନିରୁଦ୍ଧତା ଐକ୍ୟଭାବ ପ୍ରତିପାଦନ କରାଯାଇଛି । ଶୈବଙ୍କର ପଶୁ, ପାଶ ଓ ପତି ନାମକ ତିନି ପଦାର୍ଥ ସହ ଯୋଗ ଓ ଭକ୍ତିର ନିରୂପଣ ବଡ ସୁନ୍ଦର ଭାବରେ ବର୍ଣ୍ଣନା ହୋଇଛି । ପରମାତ୍ମାଙ୍କର ଉପାସ୍ୟ ରୂପ ଶିବ ଓ ବିଷ୍ଣୁ ମଧରେ ଅଭିନ୍ନତ୍ୱ ପ୍ରତିପାଦନ ଈଶ୍ୱରଗୀତାର ଉଦ୍ଦେଶ୍ୟ ଭାବରେ ବର୍ଣ୍ଣନା ହୋଇଛି । ଉଦାହରଣରେ କୁହାଯାଏ-

**ଅହମେବ ହି ସଂହର୍ତ୍ତା ସଂସ୍ରଷ୍ଟା ପରିପାଳକଃ ।**
**ମାୟା ବୈ ମାମିକା ଶକ୍ତିର୍ମାୟା ଲୋକବିମୋହିନୀ ॥**

(ଈ.ଗୀ. ୪/୧୮)

**ନ ତେ ମୁକ୍ତିଂ ପ୍ରପଶ୍ୟନ୍ତି ଜାୟନ୍ତେ ଚ ପୁନଃ ପୁନଃ ।**
**ଯେ ତ୍ୱେନଂ ବିଷ୍ଣୁମବ୍ୟକ୍ତଂ ମାଞ୍ଚ ଦେବଂ ମହେଶ୍ୱରମ୍ ॥**

(ଈ.ଗୀ. ୧୧/୧୧୪)

ମହର୍ଷିମାନଙ୍କର ମୁଖ୍ୟ ପ୍ରଶ୍ନ ଆତ୍ମତତ୍ତ୍ୱର ସ୍ୱରୂପ ସମ୍ବନ୍ଧୀୟ ଏବଂ ଭଗବାନ୍ ଶଙ୍କର ମଧ୍ୟ ବେଦାନ୍ତଶାସ୍ତ୍ର ପ୍ରତିପାଦିତ ତତ୍ତ୍ୱ ତଥା ସାଂଖ୍ୟମତ ଅନୁସାରେ ଆତ୍ମାର ଶୁଦ୍ଧ ସ୍ୱରୂପ ବୁଝାଇ କହନ୍ତି ''ଏକ ବ୍ରହ୍ମ ଦ୍ୱିତୀୟ ନାସ୍ତି'' ଅଥବା ''ବ୍ରହ୍ମ ସତ୍ୟ ଜଗତ୍ ମିଥ୍ୟା'' ଏପରି ବେଦାନ୍ତ ଅନୁସାରେ ସର୍ବତ୍ର ଏକ ବ୍ୟାପକ ବ୍ରହ୍ମଙ୍କର ପ୍ରକାଶ ମାତ୍ର ସ୍ୱରୂପ ପ୍ରକାଶ ହିଁ ବ୍ରହ୍ମ ଏବଂ ଭକ୍ତି ଜୀବମାନଙ୍କ କଲ୍ୟାଣ ପାଇଁ ଅନିବାର୍ଯ୍ୟ ବୋଲି କୁହାଯାଇଛି । ଜଗତରେ ସର୍ବତ୍ର ନିଜର ସ୍ତୁତି, ନିଜର ଆରଧନା ଏବଂ ସମସ୍ତ ଦେବଗଣ ମଧ୍ୟରେ ନିଜର ଐଶ୍ୱର୍ଯ୍ୟ ହିଁ ଭଗବାନ୍ ଶଙ୍କରଙ୍କର ଉଚ୍ଚ ଆଦର୍ଶ ଅଟେ । ଯେପରି ଶ୍ରୀକୃଷ୍ଣ କୁରୁକ୍ଷେତ୍ରରେ ଶ୍ରୀମାନ୍ ଅର୍ଜୁନଙ୍କୁ ଗୀତାର ଚତୁର୍ଥ ଅଧ୍ୟାୟରେ ସପ୍ତମ ଶ୍ଳୋକରେ କହିଛନ୍ତି-

**ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ ।**
**ଅଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହମ୍ ।।** (ଗୀତା ୪/୭)

ଗୋସ୍ୱାମୀ ତୁଳସୀଦାସ ମଧ୍ୟ ତାଙ୍କର ଚରିତ ମାନସରେ କହିଲେ -

**ଶିବ ଦ୍ରୋହୀ ମମ ଦାସ କହା ବୈ ।**
**ସୋନର ସପନେହୁ ମୋହିନଭାବୈ ।।**
**ବନ୍ଦୋ ବାଳରୂପ ସୋଇ ରାମୁ ।**
**ସର୍ବବିଧି ସୁଲଭ ଜପତ ଜଣନାମୁ ।।**

ଏହିପରି କଥନ ମାଧ୍ୟମରେ ଭଗବାନ୍ ବିଷ୍ଣୁ ଓ ଭଗବାନ୍ ଶଙ୍କରଙ୍କର ସାମ୍ୟତା ପ୍ରତିପାଦିତ କରାଯାଇଛି । ଈଶ୍ୱରଙ୍କର ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଏହି ତ୍ରିମୂର୍ତ୍ତିର ଐକ୍ୟତାର ସର୍ବଶ୍ରେଷ୍ଠ ସାକ୍ଷୀ ଭାବରେ ଉପନିଷଦରେ ରହିଛି ।

**''ଏକୋ ଦେବଃ ସର୍ବଭୂତେଷ୍ୱୁ**
**ଗୂଢଃ ସର୍ବବ୍ୟାପୀ ସର୍ବଭୂତାନ୍ତରାତ୍ମା ।**
**କର୍ମାଧ୍ୟକ୍ଷଃ ସର୍ବଭୂତାଧିବାସଃ**
**ସାକ୍ଷୀ ଚେତା କେବଳୋ ନିର୍ଗୁଣଶ୍ଚ ।।''**

(ଶ୍ୱେତାଶ୍ୱତର ଉପନିଷଦ୍ ୬/୧୧)

ଭଗବାନ୍ ଶଙ୍କର ନିଜର ବିଭୂତି ବର୍ଣ୍ଣନା ପ୍ରସଙ୍ଗରେ ସାଂସାରିକ ବନ୍ଧ ନିରୂପଣ ସହ ଅଦ୍ୱୈତ ତତ୍ତ୍ୱର ବିବେଚନ କରିଛନ୍ତି । ବ୍ରହ୍ମପ୍ରାପ୍ତି ହିଁ ପ୍ରାଣୀମାନଙ୍କର ଲକ୍ଷ୍ୟ । ପାଶୁପତଯୋଗ, ଭକ୍ତି ମିଶ୍ରିତ ବୈଦିକ କର୍ମଯୋଗ, ଶିବଲିଙ୍ଗ ପୂଜନ

ଏବଂ କାଶୀବାସ ଈଶ୍ୱରଗୀତାର ଅପୂର୍ବ ବର୍ଣ୍ଣନ ଭଗବାନ୍ ମହାଦେବଙ୍କଦ୍ୱାରା ସମ୍ଭବ ହୋଇପାରିଛି ।

ଗୀତାଜ୍ଞାନ ଅନୁସାରେ ଜଗତର ପ୍ରତ୍ୟେକ ମନୁଷ୍ୟଙ୍କର ପ୍ରଥମ ଓ ପ୍ରଧାନ କର୍ତ୍ତବ୍ୟ ହେଲା ପରମେଶ୍ୱରଙ୍କର ଶୁଦ୍ଧ ସ୍ୱରୂପ ଜ୍ଞାନପ୍ରାପ୍ତି କରି, ତା ମାଧ୍ୟମରେ ନିଜ ବୁଦ୍ଧି ଓ ଶକ୍ତିକୁ ନିର୍ମଳ କରି, ପ୍ରତ୍ୟେକ ମନୁଷ୍ୟର କଲ୍ୟାଣ ସାଧନ କରିବା ଉଚିତ୍ । 'ସର୍ବଭୂତହିତେ ରତାଃ' ଏହି ସିଦ୍ଧାନ୍ତ ଅନୁସାରେ 'ଜୀବେ ଦୟା' ବ୍ରତ ଧାରଣ କରିବା ଉଚିତ୍ । ଏହିପରି ଗୀତାରେ ଯେଉଁ ବିଶୁଦ୍ଧ ଜ୍ଞାନ ମୂଳକ ଅନନ୍ୟ ଭକ୍ତି ପ୍ରଧାନ ଓ ନିଷ୍କାମ କର୍ମ ବିଷୟକ ସନ୍ଦେଶ ଦିଆଯାଇଛି ତାହାକୁ ଜୀବନସାରା ପାଳନ କରିବା ଉଚିତ୍ ।

---*---

# ବିଷୟସୂଚୀ



---*---

॥ ହରିଃ ଓଁ ତତ୍ସତ୍ ॥

# ଈଶ୍ୱରଗୀତା

## <u>ମଙ୍ଗଳାଚରଣମ୍</u>

ସଚିଦାନନ୍ଦରୂପାୟ ବ୍ରହ୍ମଣେ ଶିବରୂପିଣେ ।
ନମସ୍କୁର୍ମୋ ବୟଂ ନିତ୍ୟଂ ନିତ୍ୟବୋଧପ୍ରଦାୟିନେ ॥

*

॥ ଶ୍ରୀଗଣେଶାୟ ନମଃ ॥ ଶ୍ରୀଶାମ୍ବସଦାଶିବାୟ ନମଃ ॥

## ପ୍ରଥମ ଅଧ୍ୟାୟ

### ଅଧିକାରିକଯୋଗ

*(ମୁକ୍ତି ଜ୍ଞାନାଦିର ଆଠଟି ପ୍ରଶ୍ନକୁ ଆଧାର କରି ସନତ୍କୁମାର ଆଦି ଋଷିମାନେ ଶ୍ରୀନାରାୟଣଙ୍କୁ ପ୍ରଶ୍ନ କରିଥିଲେ । ଶ୍ରୀଶିବଶଙ୍କର ହଠାତ୍ ପ୍ରକଟ ହୋଇ ଶ୍ରୀନାରାୟଣଙ୍କୁ, ତତ୍ସଙ୍ଗ ମହର୍ଷିମାନଙ୍କୁ ଉପଦେଶ ଦେବା ପାଇଁ ଅନୁରୋଧ କଲେ । ଏହି ଅଧ୍ୟାୟର ନାମ ଅଧିକାରିକଯୋଗ ଅଟେ । କାରଣ ପୂର୍ବୋକ୍ତ ଋଷିମାନେ ତପଦ୍ୱାରା ଏହି ଅଧ୍ୟାୟରେ ଈଶ୍ୱରଗୀତାରେ କୁହାଯାଇଥିବା ତତ୍ତ୍ୱର ଅଧିକାରୀ ବୋଲି କୁହାଯାଇଛି । ଏହି ଅଧ୍ୟାୟରେ ୫୧ଟି ଶ୍ଳୋକ ରହିଛି । ପ୍ରଥମ ଶ୍ଳୋକଟି ମଙ୍ଗଳାଚରଣ ଭାବରେ ନମସ୍କାରାତ୍ମକ ମଙ୍ଗଳାଚରଣ ହୋଇ ବିଘ୍ନବିନାଶ କରି ଗ୍ରନ୍ଥ ସମାପନ କରିବାରେ ସାହାଯ୍ୟ କରିଛି ।)*

॥ ଶ୍ରୀଋଷୟ ଊଚୁଃ ॥

ଭବତା କଥିତଃ ସମ୍ୟକ୍ ସର୍ଗଃ ସ୍ୱାୟମ୍ଭୁବଃ ପ୍ରଭୋ ।
ବ୍ରହ୍ମାଣ୍ଡସ୍ୟାଦିବିସ୍ତାରୋ ମନ୍ୱନ୍ତରବିନିଶ୍ଚୟଃ ॥୧

ତତ୍ରେଶ୍ୱରେଶ୍ୱରଦେବୋ ବର୍ଣ୍ଣିଭିର୍ଧର୍ମତତ୍ପରୈଃ ।
ଜ୍ଞାନଯୋଗରତୈର୍ନିତ୍ୟମାରାଧ୍ୟଃ କଥିତସ୍ତ୍ୱୟା ॥୨

ତତ୍ତ୍ୱଶେଷସଂସାରଦୁଃଖନାଶମନୁତ୍ତମମ୍ ।
ଜ୍ଞାନଂ ବ୍ରହ୍ମୈକବିଷୟଂ ତେନ ପଶ୍ୟେମ ତତ୍ପରମ୍ ॥୩

ତ୍ୱଂ ହି ନାରାୟଣଂ ସାକ୍ଷାତ୍କୃଷ୍ଣଦ୍ୱୈପାୟନାତ୍ପ୍ରଭୋ ।
ଆବାପ୍ତାଖିଳଂ ବିଜ୍ଞାନସ୍ତତ୍ତ୍ୱାଂ ପୃଚ୍ଛାମହେ ପୁନଃ ॥୪

ଋଷିମାନେ ସୁତମୁନିଙ୍କୁ ପଚାରିଲେ ହେ ପ୍ରଭୋ ! ଆପଣ ସ୍ୱାୟମ୍ଭୁଦ୍ୱାରା ସୃଷ୍ଟ ସର୍ଗ ବ୍ରାହ୍ମଣଙ୍କର ଆଦି ବିସ୍ତାର ତଥା ମନ୍ୱନ୍ତର ନିର୍ଣ୍ଣୟର ସମସ୍ତ ପ୍ରକାର ଓ ଏହି ସବୁରେ ନିଜ ବର୍ଣ୍ଣ ଧର୍ମରେ ତତ୍ପର ଏବଂ ଜ୍ଞାନ ଯୋଗରେ ନିରତ ପୁରୁଷଙ୍କଦ୍ୱାରା ଆରାଧନାର ଯୋଗ୍ୟ ଈଶ୍ୱରଙ୍କ ଈଶ୍ୱର ପରମାତ୍ମା ଦେବଙ୍କୁ ନିରୂପଣ କଲେ । ସମସ୍ତ ସଂସାରର ଦୁଃଖ ନାଶ କରିପାରିବା ହିଁ ସବୁଠାରୁ ଶ୍ରେଷ୍ଠ ଏକ ବ୍ରହ୍ମଙ୍କର ପ୍ରତିପାଦନ କରିପାରିବ । ଜ୍ଞାନକୁ ତତ୍ତ୍ୱଭାବରେ ଆପଣ ପ୍ରତିପାଦନ କରନ୍ତୁ । ଆମେ ସମସ୍ତେ ଏହି ତତ୍ତ୍ୱ ସାକ୍ଷାତ୍ କରିବା ପାଇଁ ଇଚ୍ଛୁକ । କାରଣ ଆପଣ ସାକ୍ଷାତ୍ ନାରାୟଣ ଭଗବାନ୍ କୃଷ୍ଣଦ୍ୱୈପାୟନ ବ୍ୟାସଙ୍କ ପାଖରୁ ସମସ୍ତ ବିଜ୍ଞାନ ପ୍ରାପ୍ତ କରିଛନ୍ତି । ଏଣୁ ଆମ୍ଭେମାନେ ପୁନର୍ବାର ଆପଣଙ୍କୁ ପ୍ରଶ୍ନ କରି ତାର ଉତ୍ତର ଛଳରେ ତତ୍ତ୍ୱଜ୍ଞାନ ଲାଭ କରିବା ପାଇଁ ଇଚ୍ଛା କରୁଛୁ ।

ଏହି ଈଶ୍ୱରଗୀତାରେ ମୁନିଋଷିମାନେ ସୂତମୁନିଙ୍କ ପାଖରୁ ତତ୍ତ୍ୱବାଣୀ ଶୁଣିଛନ୍ତି । ମାତ୍ର ଶ୍ରୀମଦ୍‌ଭଗବଦ୍‌ଗୀତା ପଞ୍ଚମ ବେଦସ୍ୱରୂପ ତତ୍ତ୍ୱଜ୍ଞାନର ଭଣ୍ଡାର ଭଗବାନ ବ୍ୟାସଦେବଙ୍କଦ୍ୱାରା ବିରଚିତ ମହାପବିତ୍ର ମହାଭାରତ ଗ୍ରନ୍ଥର ଅଠର ପର୍ବରୁ ଭୀଷ୍ମପର୍ବରେ ଅନ୍ତର୍ଭୁକ୍ତ । ଏହି ଭଗବଦ୍‌ଗୀତା ଭଗବାନ୍ ଶ୍ରୀକୃଷ୍ଣ ସଖା ଅର୍ଜ୍ଜୁନଙ୍କୁ ନିମିତ୍ତ କରି ତତ୍ତ୍ୱର ଭଣ୍ଡାର ଖୋଲିଛନ୍ତି । କୌରବ ପାଣ୍ଡବ ମଧ୍ୟରେ ଅନୁଷ୍ଠିତ ମହାଭାରତ ଯୁଦ୍ଧ (ଯେଉଁଠି ହସ୍ତିନା ପୁରର ମହାରାଜା ଧୃତରଷ୍ଟ୍ରଙ୍କ ପୁତ୍ର କୌରବ ଓ ତାଙ୍କ ସାନଭାଇ ପଣ୍ଡୁଙ୍କ ପୁତ୍ର ପାଣ୍ଡବ ମଧ୍ୟରେ ଅନୁଷ୍ଠିତ ଯୁଦ୍ଧ) । ଏଠାରେ ତାତ୍ପର୍ଯ୍ୟ ହେଲା ଏ ସଂସାର ରୂପକ ରଙ୍ଗମଞ୍ଚରେ ଅନୁଷ୍ଠିତ ହେଉଥିବା ନାଟକ ମୁଁ ମୋର ଓ ତୁମେ ତୁମର ସହ ଯୁଦ୍ଧ । ଏହା ମଧ୍ୟରେ "ମୁଁର ହିଁ ବିଜୟ କାରଣ, ମୁଁ ହିଁ ସମସ୍ତ ସ୍ଥାବର ଅସ୍ଥାବର ପ୍ରାଣୀ, ଜୀବ ଜଗତରେ ବିଦ୍ୟମାନ ମୁଁ ହିଁ ଅମର, ମୁଁ ଛଡା ଅନ୍ୟ ସବୁ ମରଣଶୀଳ, ପରିବର୍ତ୍ତନଶୀଳ ସାଂସାରିକ ତ୍ରିବିଧ ଦୁଃଖର କାରଣ ।

ଧର୍ମକ୍ଷେତ୍ରେ କୁରୁକ୍ଷେତ୍ରେ ସମବେତା ଯୁଯୁତ୍ସବଃ ।
ମାମକାଃ ପାଣ୍ଡବାଶ୍ଚୈବ କିମକୁର୍ବତ ସଞ୍ଜୟ ॥(ଶ୍ରୀଭ.ଗୀ. ୧/୧)

'ମାମକାଃ ପାଣ୍ଡବାଶ୍ଚୈବ' ମୁଁ ମୋର ପୁତ୍ରମାନେ ଓ ପାଣ୍ଡବମାନେ ଏମାନଙ୍କର ଯୁଦ୍ଧାରମ୍ଭ ।

**ଶ୍ରୁତ୍ୱା ମୁନୀନାଂ ତଦ୍ୱାକ୍ୟଂ କୃଷ୍ଣଦ୍ୱୈପାୟନାତ୍ପ୍ରଭୁଃ ।**
**ସୂତଃ ପୌରାଣିକଃ ଶ୍ରୁତ୍ୱା ଭାଷିତୁଂ ହ୍ୟୁପଚକ୍ରମେ ।।୫**
**ତଥାସ୍ମିନ୍ନନ୍ତରେ ବ୍ୟାସଃ କୃଷ୍ଣଦ୍ୱୈପାୟନଃ ସ୍ୱୟମ୍ ।**
**ଆଜଗାମ ମୁନିଶ୍ରେଷ୍ଠୋ ଯତ୍ର ସତ୍ରଂ ସମାସତେ ।।୬**
**ତଂ ଦୃଷ୍ଟ୍ୱା ବେଦବିଦ୍ୱାଂସଂ କାଳମେଘସମଦ୍ୟୁତିମ୍ ।**
**ବ୍ୟାସଂ କମଳାତ୍ରାକ୍ଷଂ ପ୍ରଣେମୁର୍ଦ୍ୱିଜପୁଙ୍ଗବାଃ ।।୭**
**ପପାତ ଦଣ୍ଡବଦ୍ଭୂମୌ ଦୃଷ୍ଟ୍ୱାଽସୌ ଲୋମହର୍ଷଣଃ ।**
**ପ୍ରଣମ୍ୟ ଶିରସା ଭୂମୌ ପ୍ରାଞ୍ଜଳିର୍ବଶଗୋଽଭବତ୍ ।।୮**
**ପୃଷ୍ଟାସ୍ତେଽନାମୟଂ ବିପ୍ରାଃ ଶୌନକାଦ୍ୟା ମହାମୁନିମ୍ ।**
**ସମାସୃତ୍ୟାସନଂ ତସ୍ମୈ ତଦ୍ୟୋଗ୍ୟଂ ସମକଳ୍ପୟନ୍ ।।୯**
**ଅଥୈତାନବ୍ରବୀଦ୍ୱାକ୍ୟଂ ପରାଶରସୁତଃ ପ୍ରଭୁଃ ।**
**କଚ୍ଚିନ୍ନହାନିସ୍ତପସଃ ସ୍ୱାଧ୍ୟାୟସ୍ୟ ଶ୍ରୁତସ୍ୟ ଚ ।।୧୦**

ମୁନିମାନଙ୍କ ପ୍ରଶ୍ନ ଶୁଣି ପୁରାଣ ତତ୍ତ୍ୱକୁ ଜାଣିଥିବା ଶ୍ରୀସୂତମୁନି ଭଗବାନ୍ ବ୍ୟାସଙ୍କଠାରୁ ଶୁଣିଥିବା ତତ୍ତ୍ୱ କହିବା ଆରମ୍ଭ କଲେ । ସେହି ସମୟରେ ଯଜ୍ଞାନୁଷ୍ଠାନ ପାଇଁ ଏକତ୍ର ହୋଇଥିବା ମୁନିମାନେ ଶ୍ରୀସୂତଜୀଙ୍କୁ ପ୍ରଶ୍ନ କଲେ । ଠିକ୍ ସେହି ସମୟରେ ଭଗବାନ୍ କୃଷ୍ଣଦ୍ୱୈପାୟନ ବ୍ୟାସଦେବ ସ୍ୱୟଂ ସେଠାକୁ ଆସିଲେ ।

କଳାମେଘ ସମ କାନ୍ତିଯୁକ୍ତ, କମଳନେତ୍ର, ବେଦବିଦ୍ୟାର ବିଦ୍ୱାନ୍ ଶ୍ରୀବ୍ୟାସଦେବଙ୍କୁ ଦେଖି ମୁନିଗଣ ଦ୍ୱିଜୋତ୍ତମ ବ୍ରାହ୍ମଣମାନେ ପ୍ରଣାମ କଲେ ଓ ଶ୍ରୀସୂତମୁନି ମଧ୍ୟ ପ୍ରଥମେ ଦଣ୍ଡବତ ପ୍ରଣାମ କରି ହାତଯୋଡ଼ି ବ୍ୟାସଙ୍କ ଶରଣକୁ ଆସିଲେ ।

ଶୌନକାଦିମୁନିମାନେ ସ୍ୱାଗତପୂର୍ବକ ବ୍ୟାସଦେବଙ୍କୁ କୁଶଳ ପଚାରିଲେ, ଯଥାଯୋଗ୍ୟ ଆସନରେ ବସାଇଲେ ଓ ତାଙ୍କର ସ୍ୱାଧ୍ୟାୟ ବା ତପଶ୍ଚର୍ଯ୍ୟାରେ କୌଣସି ହାନି ହୋଇ ନାହିଁ ବୋଲି ପ୍ରଶ୍ନ କଲେ । ବ୍ୟାସଦେବଙ୍କର ଭଲ-ମନ୍ଦ, ହାନି-ଲାଭ, ସୁଖ-ଦୁଃଖ ଆଦି ପଚରାପଚରି କରି ତାଙ୍କୁ ଯଥାଯୋଗ୍ୟ ସମ୍ମାନ ପ୍ରଦାନ କଲେ ।

**ତତଶ୍ଚ ସୂତଃ ସ୍ୱଗୁରୁଂ ପ୍ରଣମ୍ୟାହ ମହାମୁନିମ୍ ।**
**ଜ୍ଞାନଂ ତଦ୍ବାହ୍ୟବିଷୟଂ ମୁନୀନାଂ ବକ୍ତୁମର୍ହସି ।।୧୧**

ଇମେ ହି ମୁନୟଃ ଶାନ୍ତାସ୍ତାପସାଃ ଧର୍ମତତ୍ପରାଃ ।
ଶୁଶ୍ରୂଷା ଜାୟତେ ଚୈଷାଂ ବକ୍ତୁମର୍ହସି ତତ୍ତ୍ୱତଃ ॥୧୨

ଜ୍ଞାନଂ ବିମୁକ୍ତିଦଂ ଦିବ୍ୟଂ ଯନ୍ମେ ସାକ୍ଷାତ୍ତ୍ୱୟୋଦିତମ୍ ।
ମୁନୀନାଂ ବ୍ୟାହୃତଂ ପୂର୍ବଂ ବିଷ୍ଣୁନା କୂର୍ମରୂପିଣା ॥୧୩

ଶ୍ରୁତ୍ୱା ସୁତସ୍ୟ ବଚନଂ ମୁନିଃ ସତ୍ୟବତୀ ସୁତଃ ।
ପ୍ରଣମ୍ୟ ଶିରସା ରୁଦ୍ରଂ ବଚଃ ପ୍ରାହ ସୁଖାବହମ୍ ॥୧୪

ଏହାପରେ ଶ୍ରୀସୂତମହାମୁନି ବ୍ୟାସଦେବଙ୍କୁ ପ୍ରଣାମ କରି କହିଲେ - ପୂର୍ବ ସମୟରେ କୂର୍ମାବତାର ଧାରଣ କରି ଭଗବାନ୍ ବିଷ୍ଣୁ ମୁନିମାନଙ୍କୁ ଯେଉଁ ଦିବ୍ୟଜ୍ଞାନ ଦେଇଥିଲେ, ଯାହାକି ସାକ୍ଷାତ୍ ମତେ ଉପଦେଶ ଦେଇଥିଲେ, ସେହି ବ୍ରହ୍ମଜ୍ଞାନ ଏହି ମୁନିମାନଙ୍କୁ ଶୁଣାନ୍ତୁ । ଏହା ଶୁଣିବାକୁ ଏହି ମୁନିଗଣ ଇଚ୍ଛା କରିଛନ୍ତି । ତେଣୁ ଏହି ମୁନିବୃନ୍ଦ ପୂର୍ଣ୍ଣ ଶାନ୍ତ ତପସ୍ୱୀ ଏବଂ ଧର୍ମରତ ଅଟନ୍ତି । ଅତଏବ ଏହିମାନଙ୍କୁ ଅବଶ୍ୟ ଶୁଣାନ୍ତୁ । ଏମାନେ ଏହି ଜ୍ଞାନର ଅଧିକାରୀ ଅଟନ୍ତି ।

ସତ୍ୟବତୀଙ୍କ ପୁତ୍ର ଶ୍ରୀମହାମୁନି ବ୍ୟାସଦେବ ସୂତମହାମୁନିଙ୍କ କଥା ଶୁଣି ଦେବାଧିଦେବ ଶ୍ରୀରୁଦ୍ରଦେବଙ୍କୁ ନମସ୍କାର କରି ଆନନ୍ଦପୂର୍ଣ୍ଣ ବଚନ କହିବାକୁ ଆରମ୍ଭ କଲେ ।

॥ ଶ୍ରୀବ୍ୟାସ ଉବାଚ ॥

ବକ୍ଷ୍ୟେ ଦେବୋ ମହାଦେବଃ ପୃଷ୍ଟୋ ଯୋଗୀଶ୍ୱରୈଃ ପୁରା ।
ସନତ୍କୁମାରପ୍ରମୁଖୈଃ ସ ସ୍ୱୟଂ ସମଭାଷତ ॥୧୫

ଏକସମୟରେ ସନତ୍କୁମାର ଆଦି ମହର୍ଷି ଦେବତା ଶ୍ରୀଶଙ୍କରଙ୍କଠାରୁ ପଚାରି ଯେଉଁ ଜ୍ଞାନ ପାଇଥିଲେ ସେହି ଜ୍ଞାନ ଉପଦେଶ ଆପଣମାନଙ୍କୁ କହୁଛି ।

ସନତ୍କୁମାରଃ ସନକସ୍ତଥୈବ ଚ ସନନ୍ଦନଃ ।
ଅଙ୍ଗିରା ରୁଦ୍ରସହିତୋ ଭୃଗୁଃ ପରମଧର୍ମବିତ୍ ॥୧୬

କଣାଦଃ କପିଲୋ ଗର୍ଗୋ ବାମଦେବୋ ମହାମୁନିଃ ।
ଶୁକୋ ବଶିଷ୍ଠୋ ଭଗବାନ୍ ସର୍ବେ ସଂଯତମାନସାଃ ॥୧୭

ପରସ୍ପରଂ ବିଚାର୍ଯ୍ୟେତେ ସଂଯମାବିଷ୍ଟଚେତସଃ ।
ତପ୍ତବନ୍ତସ୍ତପୋଘୋରଂ ପୁଣ୍ୟେ ବଦରିକାଶ୍ରମେ ॥୧୮

ଅପଶ୍ୟଂସ୍ତେ ମହାଯୋଗମୃଷି ଧର୍ମସୁତଂ ମୁନିମ୍ ।
ନାରାୟଣମନାଦ୍ୟନ୍ତଂ ନରେଣ ସହିତଂ ତଦା ॥୧୯

ସନକ, ସନନ୍ଦନ, ସନତ୍କୁମାର, ଅଙ୍ଗିରା, ରୁଦ୍ରଙ୍କ ସହ ପରମ ଧର୍ମଜ୍ଞ ଭୃଗୁ, କଣାଦ, କପିଳ, ଗର୍ଗ, ମହାମୁନି ବାମଦେବ, ଶୁକ୍ରାଚାର୍ଯ୍ୟ ଏବଂ ଭଗବାନ ବଶିଷ୍ଠ ଆଦି ମୁନିମାନେ ପରସ୍ପର ବିଚାର କରି ପବିତ୍ର ବଦ୍ରିକାଶ୍ରମରେ ଘୋର ତପାନୁଷ୍ଠାନରେ ରତ ହୋଇ ଦତ୍ତଚିତ୍ତ ହେଲେ । ତପସ୍ୟାରେ ମୁନିମାନେ ପ୍ରବୃଦ୍ଧ ହୋଇ ମହାଯୋଗୀ ଋଷି ଧର୍ମପ୍ରବର୍ତ୍ତକ ହୋଇ ନରମାନଙ୍କ ସହିତ ଆଦିଅନ୍ତ ଶୂନ୍ୟ ଶ୍ରୀନାରାୟଣ ଋଷିଙ୍କୁ ସାକ୍ଷାତ୍ କଲେ ।

**ସଂସ୍ତୂୟ ବିବିଧୈଃ ସ୍ତୋତ୍ରୈଃ ସର୍ବବେଦସମୁଦ୍ଭବୈଃ ।**
**ପ୍ରଣେମୁର୍ଭକ୍ତିସଂଯୁକ୍ତା ଯୋଗିନୋ ଯୋଗବିତ୍ତମମ୍ ।।୨୦**

ଏହି ଋଷିମାନେ ବେଦରେ କୁହାଯାଇଥିବା ନାନାପ୍ରକାର ସ୍ତୋତ୍ର କରି ଯୋଗବେତ୍ତାରେ ଶ୍ରେଷ୍ଠ ଶ୍ରୀନାରାୟଣ ଋଷିଙ୍କ ସ୍ତୁତି କରି ଭକ୍ତିପୂର୍ବକ ନମସ୍କାର କଲେ ।

**ବିଜ୍ଞାୟ ବାଞ୍ଛିତଂ ତେଷାଂ ଭଗବାନପି ସର୍ବବିତ୍ ।**
**ପ୍ରାହ ଗମ୍ଭୀରୟା ବାଚା କିମର୍ଥଂ ତପ୍ୟତେ ତପଃ ? ।।୨୧**

ସର୍ବଜ୍ଞ ଭଗବାନ୍ ମଧ୍ୟ ଏହି ମୁନିମାନଙ୍କର ଅଭିଳଷିତ ବିଷୟକୁ ଜାଣି ମଧ୍ୟ ଗମ୍ଭୀର ସ୍ୱରରେ ପଚାରିଲେ- ହେ ମୁନିଗଣ ! କେଉଁ ଅର୍ଥ ପ୍ରାପ୍ତି ପାଇଁ ଏପରି ତପସ୍ୟା କରୁଛ ?

**ଅବ୍ରୁବନ୍ ହୃଷ୍ଟମନସୋ ବିଶ୍ୱାତ୍ମାନଂ ସନାତନମ୍ ।**
**ସାକ୍ଷାନ୍ନାରାୟଣଂ ଦେବମାଗତଂ ସିଦ୍ଧିସୂଚକମ୍ ।।୨୨**
**ବୟଂ ସଂଯମମାପନ୍ନାଃ ସର୍ବେ ବୈ ବ୍ରହ୍ମବାଦିନଃ ।**
**ଭବନ୍ତମେକଂ ଶରଣଂ ପ୍ରପନ୍ନାଃ ପୁରୁଷୋତ୍ତମମ୍ ।।୨୩**
**ତ୍ୱଂ ବେତ୍ସି ପରମଂ ଗୁହ୍ୟଂ ସର୍ବଂ ତୁ ଭଗବାନୃଷିଃ ।**
**ନାରାୟଣଃ ସ୍ୱୟଂ ସାକ୍ଷାତ୍ପୁରାଣୋଽବ୍ୟକ୍ତପୁରୁଷଃ ।।୨୪**
**ନ ହ୍ୟନ୍ୟୋ ବିଦ୍ୟତେ ବେତ୍ତା ତ୍ୱାମୃତେ ପରମେଶ୍ୱରମ୍ ।**
**ସ ତ୍ୱମସ୍ମାକମଖିଳଂ ସଂଶୟଂ ଛେତ୍ତୁମର୍ହସି ।।୨୫**

ସମସ୍ତ ସନାତନ ଜଗତର ଆତ୍ମାସ୍ୱରୂପ ଏବଂ ଦିବ୍ୟସ୍ୱରୂପଯୁକ୍ତ ସିଦ୍ଧିର ସୂଚକ ସାକ୍ଷାତ୍ ନାରାୟଣଙ୍କ ନିକଟକୁ ଆସୁଥିବା ଦେଖି ବଡ଼ ପ୍ରସନ୍ନ ହୋଇ ମୁନିଗଣ କହିଲେ- ଆମ୍ଭେମାନେ ସଂଯମତା ଧାରଣ କରିଥିବା ଏବଂ ପରମାତ୍ମାରେ ସର୍ବଦା ଲୀନ ରହୁଥିବା ପୁରୁଷ ମଧ୍ୟରେ ଉତ୍ତମ ପୁରୁଷୋତ୍ତମ ଆପଣଙ୍କ ଶରଣରେ ଆସିଅଛୁ,

ଆପଣ ସମସ୍ତ ଗୁହ୍ୟତତ୍ତ୍ୱକୁ ଜାଣିଛନ୍ତି । ତେଣୁ ଆପଣ ଭଗବାନ୍ ଓ ଋଷି ମଧ୍ୟ । ଆପଣ ନାରାୟଣ ଅର୍ଥାତ୍ ସମସ୍ତ ପ୍ରାଣୀ ମଧ୍ୟରେ ବ୍ୟାପକ ଥାଇ ମଧ୍ୟ ସ୍ୱତନ୍ତ୍ର, ଅନାଦି, ସାକ୍ଷାତ୍ ଅବ୍ୟକ୍ତ ପୁରୁଷ। ଆପଣ ସର୍ବବ୍ୟାପକ ପରମୈଶ୍ୱର୍ଯ୍ୟ ସ୍ୱରୂପ ଆପଣଙ୍କ ବ୍ୟତୀତ ସମସ୍ତ ବିଷୟର ଜ୍ଞାତା ସର୍ବଜ୍ଞ ଅନ୍ୟ କେହି ନାହାଁନ୍ତି । ତେଣୁ ଆପଣ ଆମ ସମସ୍ତଙ୍କର ସଂଶୟକୁ ଦୂର କରନ୍ତୁ ।

**କିଂ କାରଣମିଦଂ କୃତ୍ସ୍ନଂ କୋଽନୁସଂସରତେ ସଦା ।**
**କଶ୍ଚିଦାତ୍ମା ଚ କା ମୁକ୍ତିଃ ସଂସାରଃ କିନ୍ନିମିତ୍ତକଃ ।।୨୬**
**କଃ ସଂସାରପତୀଶାନଃ କୋ ବା ସର୍ବଂ ପ୍ରପଶ୍ୟତି ।**
**କିଂ ତତ୍ପରତରଂ ବ୍ରହ୍ମ ସର୍ବଂ ନୋ ବକ୍ତୁମର୍ହସି ।।୨୭**

ଏହି ନାମରୂପାତ୍ମକ ଜଗତ୍ କେଉଁ କାରଣରୁ ଉତ୍ପନ୍ନ ହୋଇଛି ? କିଏ ସୁଖଦୁଃଖାଦି ଭାବଯୁକ୍ତ ? କେଉଁ ତତ୍ତ୍ୱ ଜୀବନ-ମରଣାଦି ଅବସ୍ଥାକୁ ପ୍ରାପ୍ତ ହୋଇଥାଏ ? ଆତ୍ମା କିପରି ବସ୍ତୁ ଅଟେ ? ମୁକ୍ତି କ'ଣ ବସ୍ତୁ ଅଟେ ? ଏହି ସଂସାର ନିମିତ୍ତକାରଣ କ'ଣ ? ଏହି ସଂସାରର ସ୍ୱାମୀ କିଏ ? ସାକ୍ଷୀ ରୂପରେ ସମସ୍ତ ଜଗତର ଦ୍ରଷ୍ଟା କିଏ ? - ଏହି ସମସ୍ତ ପ୍ରଶ୍ନର ଉତ୍ତର ଆପଣ ଆମ ସମସ୍ତଙ୍କୁ କୃପାକରି କୁହନ୍ତୁ ।

**ଏବମୁକ୍ତ୍ୱା ତୁ ମୁନୟଃ ପ୍ରାପଶ୍ୟନ୍ ପୁରୁଷୋତ୍ତମମ୍ ।**
**ବିହାୟ ତାପସଂ ବେଷଂ ସଂସ୍ଥିତଂ ସ୍ୱେନ ତେଜସା ।।୨୮**
**ବିଭ୍ରାଜମାନଂ ବିମଳଂ ପ୍ରଭାମଣ୍ଡଳମଣ୍ଡିତମ୍ ।**
**ଶ୍ରୀବତ୍ସବକ୍ଷସଂ ଦେବଂ ତପ୍ତଜାମ୍ବୂନଦପ୍ରଭମ୍ ।।୨୯**
**ଶଙ୍ଖଚକ୍ରଗଦାପାଣିଂ ଶାର୍ଙ୍ଗହସ୍ତଶ୍ରିୟାବୃତମ୍ ।**
**ନ ଦୃଷ୍ଟସ୍ତତ୍କ୍ଷଣାଦେବ ନରସ୍ତସ୍ୟୈବ ତେଜସା ।।୩୦**

ପୂର୍ବୋକ୍ତ ପ୍ରଶ୍ନ ପଚାରିସାରିଲା ପରେ ମୁନିମାନେ ତପସ୍ୱୀ ବେଶଶୂନ୍ୟ, ନିଜ ତେଜରେ ପ୍ରକାଶିତ, ନିର୍ମଳ ପ୍ରଭାମଣ୍ଡଳଦ୍ୱାରା ସୁଶୋଭିତ ଶ୍ରୀବତ୍ସ ପଦଚିହ୍ନଦ୍ୱାରା ଯୁକ୍ତ, ତପଦ୍ୱାରା ସ୍ୱର୍ଣ୍ଣରତ୍ନ ପ୍ରଭା ସହ ସମାନ ଦୀପ୍ତିମାନ୍ ଲକ୍ଷ୍ମୀଙ୍କ ସହ ତଥା ଶଙ୍ଖ, ଚକ୍ର, ଗଦା ଏବଂ ଶାର୍ଙ୍ଗଧନୁ ଧାରଣ କରିଥିବା ଶ୍ରୀନାରାୟଣ ଦେବଙ୍କୁ ସାକ୍ଷାତ କଲେ । ଏହି ସମୟରେ ଭଗବାନ୍ ବିଷ୍ଣୁ ନିଜ ତେଜକୁ ଏପରି ବଢ଼ାଇଲେ ଯେ ସେହି ଅତିରିକ୍ତ ତେଜ ଭିତରେ ନରସ୍ୱରୂପ ଦେଖାଯାଉ ନଥାଏ ।

**ତଦନ୍ତରେ ମହାଦେବଃ ଶଶାଙ୍କାଙ୍କିତଶେଖରଃ ।**
**ପ୍ରସାଦାଭିମୁଖୋ ରୁଦ୍ରଃ ପ୍ରାଦୁରାସୀନ୍ମହେଶ୍ୱରଃ ।।୩୧**
**ନିରୀକ୍ଷ୍ୟ ତେ ଜଗନ୍ନାଥଂ ତ୍ରିନେତ୍ରଂ ଚନ୍ଦ୍ରଭୂଷଣମ ।**
**ତୁଷ୍ଟୁବୁର୍ହୃଷ୍ଟମନସୋ ଭକ୍ତ୍ୟା ତଂ ପରମେଶ୍ୱରମ୍ ।।୩୨**

ତାପରେ ସେହି ସମୟରେ ଦେବାଧିଦେବ ଶ୍ରୀମହାଦେବ ପ୍ରସାଦ ଭାବରେ ପ୍ରକଟ ହେଲେ । ତାଙ୍କର ମସ୍ତକରେ ଅତିସୁନ୍ଦର ଦ୍ୱିତୀୟା ରାତ୍ରିର ଚନ୍ଦ୍ରମା ସୁଶୋଭିତ ଥିଲା । ଏହିପରି ସମସ୍ତ ଜଗତର ସ୍ୱାମୀ ତଥା ତ୍ରିନୟନ ଏବଂ ଚନ୍ଦ୍ରମା ସୁଶୋଭିତ ପରମେଶ୍ୱରଙ୍କୁ ଆସୁଥିବା ଦେଖି ସମସ୍ତ ମୁନିମାନେ ଭକ୍ତିପୂର୍ବକ ସ୍ତୁତି କଲେ ।

**ଜୟେଶ୍ୱରମହାଦେବ ଜୟ ଭୂତପତେ ଶିବ ।**
**ଜୟାଶେଷମୁନିଶାନ ତପସାଽଭିପ୍ରପୂଜିତ ।।୩୩**
**ସହସ୍ରମୂର୍ତ୍ତେଃ ବିଶ୍ୱାତ୍ମନ୍ ଜଗଦ୍ୟନ୍ତପ୍ରବର୍ତ୍ତକଃ ।**
**ଜୟାନନ୍ତ ଜଗଜ୍ଜନ୍ମ-ତ୍ରାଣ-ସଂହାରକାରକଃ ।।୩୪**
**ସହସ୍ରଚରଣେଶାନ ଶମ୍ଭୋ ଯୋଗୀନ୍ଦ୍ରବନ୍ଦିତ ।**
**ଜୟାମ୍ବିକାପତେ ଦେବ ନମସ୍ତେ ପରମେଶ୍ୱରଃ ।।୩୫**

ମୁନିଙ୍କର ସ୍ତୁତି ବଚନ ଏ ପ୍ରକାର ଥିଲା- ହେ ଈଶ୍ୱର ! ସମସ୍ତ ଦେବଙ୍କଠାରୁ ଶ୍ରେଷ୍ଠ ଆପଣଙ୍କର ଜୟ ହେଉ । ହେ ସମସ୍ତ ପ୍ରାଣୀଙ୍କର ସ୍ୱାମୀ, ତପଦ୍ୱାରା ପୂଜିତ ଆପଣଙ୍କର ଜୟ ହେଉ । ହେ ସମସ୍ତ ଜଗତର ଆତ୍ମସ୍ୱରୂପ ସହସ୍ର ମୂର୍ତ୍ତି ତଥା ଏହି ଜଗତ ରୂପ ଯନ୍ତ୍ରକୁ ଚଳାଉଥିବା ଆପଣଙ୍କର ଜୟ ହେଉ । ହେ ଅନନ୍ତ, ଏହି ଜଗତର ଉତ୍ପାଦକ, ପାଳକ ସଂହାରକ ସ୍ୱରୂପ ଆପଣଙ୍କର ଜୟ ହେଉ । ହେ ଈଶାନ ସହସ୍ର ତଥା ଅନେକ ଚରଣବାଲା, ହେ ଶମ୍ଭୋ ଆପଣ ଯୋଗୀଙ୍କଦ୍ୱାରା ବନ୍ଦିତ । ହେ ଅମ୍ବିକା ପତି ଦେବ ଆପଣଙ୍କର ଜୟ ହେଉ । ହେ ପରମେଶ୍ୱର ! ଆମ୍ଭମାନଙ୍କର ଆପଣଙ୍କୁ ନମସ୍କାର ।

**ସଂସ୍ତୁତୋ ଭଗବାନୀଶସ୍ତ୍ର୍ୟମ୍ବକୋ ଭକ୍ତବତ୍ସଳଃ ।**
**ସମାଲିଙ୍ଗ୍ୟ ହୃଷିକେଶଂ ପ୍ରାହ ଗମ୍ଭୀରୟା ଗିରା ।।୩୬**

ଏହିପରି ସମସ୍ତେ ଯେତେବେଳେ ଶ୍ରୀଶଙ୍କରଙ୍କର ସ୍ତୁତି କଲେ ସେତେବେଳେ ସମସ୍ତ ଜଗତର ସ୍ୱାମୀ ତ୍ରିନୟନ ଭୂଷିତ ତଥା ଭକ୍ତଙ୍କର କୃପା କରିପାରୁଥିବା ଶିବମହାଦେବ ଶ୍ରୀ ହୃଷିକେଶ ବିଷ୍ଣୁ ଭଗବାନ୍‌ଙ୍କୁ ଆଲିଙ୍ଗନ କରି ଗମ୍ଭୀର ବାଣୀରେ କହିଲେ-

କିମର୍ଥଂ ପୁଣ୍ଡରୀକାକ୍ଷଃ ମୁନୀନ୍ଦ୍ରୋ ବ୍ରହ୍ମବାଦିନଃ ।
ଇମଂ ସମାଗତା ଦେଶଂ କିନ୍ନୁ କାର୍ଯ୍ୟଂ ମୟାଚ୍ୟୁତ ।।୩୭

ହେ କମଳନୟନ ଜନାର୍ଦ୍ଦନ ! ବ୍ରହ୍ମବେତ୍ତା ମୁନିମାନଙ୍କ ସହ ଏଠାକୁ କାହିଁକି ଆସିଲ ? ହେ ଅଚ୍ୟୁତ ! ଏହି ସମୟରେ ଆମର କ'ଣ କର୍ତ୍ତବ୍ୟ ?

ଆକର୍ଣ୍ଣ୍ୟ ତସ୍ୟ ତଦ୍‌ବାକ୍ୟଂ ଦେବଦେବୋ ଜନାର୍ଦ୍ଦନଃ ।
ପ୍ରାହ ଦେବୋ ମହାଦେବଂ ପ୍ରସାଦାଭିମୁଖଂ ସ୍ଥିତମ୍ ।।୩୮
ଇମେ ହି ମୁନୟୋ ଦେବ ତପସା କ୍ଷୀଣକଲ୍ମଷାଃ ।
ଅଭ୍ୟାଗତାନାଂ ଶରଣଂ ସମ୍ୟଗ୍‌ଦର୍ଶନକାଙ୍‌କ୍ଷିଣାମ୍ ।।୩୯
ଯଦି ପ୍ରସନ୍ନୋ ଭଗବାନ୍ ମୁନୀନାଂ ଭାବିତାତ୍ମନାମ୍ ।
ସନ୍ନିଧୌ ମମ ତଜ୍‌ଜ୍ଞାନଂ ଦିବ୍ୟଂ ବକ୍ତୁମିହାର୍ହସି ।।୪୦
ତ୍ୱଂ ହି ବେତ୍ସି ସ୍ୱମାତ୍ମାନଂ ନ ହ୍ୟନ୍ୟୋ ବିଦ୍ୟତେ ଶିବ ।
ବଦ ତ୍ୱମାତ୍ମନାତ୍ମାନଂ ମୁନୀନ୍ଦ୍ରେଭ୍ୟଃ ପ୍ରଦର୍ଶୟ ।।୪୧

ଶ୍ରୀ ଶଙ୍କରଙ୍କର ବଚନ ଶୁଣି ଦେବଙ୍କର ଦେବ ଶ୍ରୀବିଷ୍ଣୁ ଭଗବାନ୍ ପ୍ରସାଦାଭିମୁଖ ହୋଇ ମହାଦେବଙ୍କୁ କହିଲେ- ଏହି ମୁନିଗଣ ବଡ ତପସ୍ୱୀ ତଥା ସମସ୍ତ ଦୋଷଶୂନ୍ୟ ଆପଣଙ୍କ ଶରଣରେ ଆସିଛନ୍ତି । ପବିତ୍ର ଅନ୍ତଃକରଣଯୁକ୍ତ ସମ୍ୟକ୍ ଜ୍ଞାନର ଇଚ୍ଛୁକ ଏହି ମୁନିଗଣଙ୍କ ପ୍ରତି ପ୍ରସନ୍ନ ହୁଅନ୍ତୁ ଓ ଆମ ନିକଟରେ ଥିବା ବ୍ରହ୍ମ ବିଷୟକ ଦିବ୍ୟ ଜ୍ଞାନର ଉପଦେଶ ଦିଅନ୍ତୁ । ହେ କଲ୍ୟାଣ ସ୍ୱରୂପ ଆପଣ ସ୍ୱୟଂ ସ୍ୱସ୍ୱରୂପଜ୍ଞାତା ଅଟନ୍ତି । ଆପଣଙ୍କ ବ୍ୟତୀତ ଅନ୍ୟ କେହି ଏହି ସଂସାରରେ ବ୍ୟକ୍ତ ନୁହଁନ୍ତି । ଏଣୁ ଏହି ମୁନିଗଣଙ୍କୁ ନିଜସ୍ୱରୂପ ବିଷୟକ ଜ୍ଞାନ ଦିଅନ୍ତୁ ।

ଏବମୁକ୍ତ୍ୱା ହୃଷୀକେଶଃ ପ୍ରୋବାଚ ମୁନିପୁଙ୍ଗବାନ୍ ।
ପ୍ରଦର୍ଶନ୍‌ଯୋଗସିଦ୍ଧିଂ ନିରୀକ୍ଷ୍ୟ ବୃଷଭଧ୍ୱଜମ୍ ।।୪୨
ସଂଦର୍ଶନାଦ୍ଦୁମେଶସ୍ୟ ଶଙ୍କରସ୍ୟାଥ ଶୂଳିନଃ ।
କୃତାର୍ଥଂ ସ୍ୱୟମାତ୍ମାନଂ ଜ୍ଞାତୁମର୍ହଥ ତତ୍ତ୍ୱତଃ ।।୪୩
ଦ୍ରଷ୍ଟୁମର୍ହଥ ଦେବେଶଂ ପ୍ରତ୍ୟକ୍ଷଂ ପୁରତଃ ସ୍ଥିତମ୍ ।
ମମୈବ ସନ୍ନିଧାନେବ ଯଥାବଦ୍‌ବକ୍ତୁମୀଶ୍ୱରମ୍ ।।୪୪

ଏହି ପ୍ରକାରରେ ଭଗବାନ୍ ହୃଷିକେଶ ଶ୍ରୀଶଙ୍କରଙ୍କୁ ପ୍ରାର୍ଥନା କରି ଯୋଗସିଦ୍ଧିକୁ ପ୍ରଦର୍ଶନ କରାଇଲେ ଏବଂ ଶ୍ରୀଶଙ୍କରଙ୍କୁ ଅବଲୋକନ କରି ବିଷ୍ଣୁ ଭଗବାନ୍ ମୁନିଗଣଙ୍କୁ କହିଲେ । ହେ ମୁନିଗଣ ! ଆପଣ ସମସ୍ତେ ଭଗବାନ

ଉମାପତି ତ୍ରିଶୂଳଧାରୀ ଶ୍ରୀଶଙ୍କରଙ୍କୁ ଦର୍ଶନ କରି ନିଜକୁ କୃତାର୍ଥ ମନେକର । ସମ୍ମୁଖରେ ବିଦ୍ୟମାନ ଶ୍ରୀଶଙ୍କରଙ୍କୁ ପ୍ରତ୍ୟକ୍ଷ ଦର୍ଶନ କର । ଆମ୍ଭମାନଙ୍କ ନିକଟରେ ସମସ୍ତ ତତ୍ତ୍ୱକୁ ଅନୁଭବ କରିବା ପାଇଁ ସମର୍ଥ ଅଟନ୍ତି ।

**ନିଶମ୍ୟ ବିଷ୍ଣୋର୍ବଚନଂ ପ୍ରଣମ୍ୟ ବୃଷଭଧ୍ୱଜମ୍ ।**
**ସନତ୍‌କୁମାରପ୍ରମୁଖାଃ ପୃଚ୍ଛନ୍ତି ସ୍ମ ମହେଶ୍ୱରମ୍ ॥୪୫**

ଶ୍ରୀ ବିଷ୍ଣୁ ଭଗବାନଙ୍କ ବଚନ ଶୁଣି ସନତ୍‌କୁମାର ଆଦି ଋଷିମାନେ ଶଙ୍କରଙ୍କୁ ନମସ୍କାର କରି ପ୍ରଶ୍ନ ପଚାରିବା ଆରମ୍ଭ କଲେ ।

**ଅଥାସ୍ମିନ୍ନନ୍ତରେ ଦିବ୍ୟମାସନଂ ବିମଳଂ ଶିବମ୍ ।**
**କିମପ୍ୟଚିନ୍ତ୍ୟ ଗଗନାଦୀଶ୍ୱରାର୍ଥେ ସମୁଦ୍‌ଭବୌ ॥୪୬**
**ତତ୍ରାସସାଦ ଯୋଗାତ୍ମା ବିଷ୍ଣୁନା ସହ ବିଶ୍ୱକୃତ୍ ।**
**ତେଜସା ପୂରୟନ୍‌ବିଶ୍ୱଂ ଭାତି ଦେବୋ ମହେଶ୍ୱରଃ ॥୪୭**

ଏହାପରେ ଆକାଶରୁ ଦିବ୍ୟ, ବିମଳ, ଅଚିନ୍ତ୍ୟ ସ୍ୱରୂପର ଏକ ଆସନ ଶ୍ରୀଶଙ୍କର ଭଗବାନଙ୍କ ପାଇଁ ପ୍ରକଟ ହେଲା ଏବଂ ଏହା ଉପରେ ପରମଯୋଗୀ, ସମସ୍ତ ବିଶ୍ୱକୁ ସୃଷ୍ଟି କରିବାବାଲା ଶ୍ରୀଉମାପତି ଶ୍ରୀବିଷ୍ଣୁଙ୍କ ସହିତ ଉପବେଶିତ ହେଲେ । ଏହି ସମୟରେ ନିଜର ଅଲୌକିକ ଦିବ୍ୟ ତେଜଦ୍ୱାରା ସମସ୍ତ ବିଶ୍ୱକୁ ପୂର୍ଣ୍ଣ କରି ଶ୍ରୀମହେଶ୍ୱର ମଧ୍ୟ ବିରାଜିତ ହେଲେ ।

**ତତୋ ଦେବାଧିଦେବେଶଂ ଶଙ୍କରଂ ବ୍ରହ୍ମବାଦିନଃ ।**
**ବିଭ୍ରାଜମାନଂ ବିମଳେ ତସ୍ମିନ୍ ଦଦୃଶୁରାସନେ ॥୪୮**
**ତମାସନସ୍ଥଂ ଭୂତାନାମୀଶଂ ଦଦୃଶିରେ କିଳ ।**
**ଯଦନ୍ତରା ସର୍ବମେତଦ୍ୟତୋଽଭିନ୍ନମିଦଂ ଜଗତ୍ ॥୪୯**

ଏହାପରେ ଶ୍ରୀଶଙ୍କରଙ୍କର ଦିବ୍ୟ ବିମଳ ଆସନ ଉପରେ ବସିଥିବାର ଏହି ବ୍ରହ୍ମବାଦୀ ମୁନିଗଣ ଦେଖିଲେ ଯାହାଙ୍କଠାରେ ଏହି ନାମରୂପାତ୍ମକ ଜଗତ୍ ଅଭିନ୍ନ ରୂପରେ ପ୍ରତୀୟମାନ ହେଉଥାଏ । କାରଣ ଏହାଙ୍କଠାରେ ହିଁ ସମସ୍ତ ଜଗତର ସ୍ଥିତି ରହିଛି ।

**ସ ବାସୁଦେବମୀଶାନମୀଶଂ ଦଦୃଶିରେ ପରମ୍ ।**
**ପ୍ରୋବାଚ ପୃଷ୍ଟୋ ଭଗବାନ୍‌ମୁନୀନାଂ ପରମେଶ୍ୱରଃ ॥୫୦**
**ନିରୀକ୍ଷ୍ୟ ପୁଣ୍ଡରୀକାକ୍ଷଂ ସ୍ୱାତ୍ମଯୋଗମନୁତ୍ତମମ୍ ।**
**ତଚ୍ଛ୍ରଣୁଧ୍ୱଂ ଯଥାନ୍ୟାୟମୁଚ୍ୟମାନଂ ମୟାନଘାଃ ।**
**ପ୍ରଶାନ୍ତମନସଃ ସର୍ବେ ବିଶୁଦ୍ଧଂ ଜ୍ଞାନମୈଶ୍ୱରମ୍ ॥୫୧**

ଶ୍ରୀବାସୁଦେବଙ୍କ ସହିତ ଆସନ ଉପରେ ବିରାଜିତ ଶ୍ରୀଭଗବାନ୍ ଶଙ୍କର ମୁନିଗଣଙ୍କ ଉତ୍ତର ଦେବାର ତତ୍ପର ହେଲେ । ଶ୍ରୀବିଷ୍ଣୁଙ୍କ ଆଡକୁ ପବିତ୍ର ଦୃଷ୍ଟି ନିକ୍ଷେପ କରି ଏପରି କହିଲେ, ହେ ନିତାନ୍ତ ଶାନ୍ତ ଶୁଦ୍ଧ ଅନ୍ତଃକରଣ ଯୁକ୍ତ ମୁନିଗଣ ଶାନ୍ତ ମନରେ ଆପଣ ସମସ୍ତେ ବିଶୁଦ୍ଧ ଈଶ୍ୱରୀୟ ଜ୍ଞାନକୁ ଶ୍ରବଣ କରନ୍ତୁ ।

ଇତି ଶ୍ରୀକୂର୍ମପୁରାଣେ ଉତ୍ତରାର୍ଦ୍ଧେ ଈଶ୍ୱରଗୀତାସୁ ଉପନିଷସ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଋଷିବ୍ୟାସଦେବସଂବାଦେ ଅଧିକାରିକଯୋଗେ ପ୍ରଥମୋଽଧ୍ୟାୟଃ ॥

*ପବିତ୍ର ମହାଗ୍ରନ୍ଥ ମହାଭାରତରେ ଭୀଷ୍ମପର୍ବ ଅନ୍ତର୍ଗତ ଶ୍ରୀମଦ୍‌ଭଗବଦ୍‌ଗୀତା କୃଷ୍ଣଦ୍ୱୈପାୟନ ବ୍ୟାସଙ୍କଦ୍ୱାରା ରଚିତ ମାତ୍ର ଭଗବାନ୍ ଶ୍ରୀକୃଷ୍ଣଙ୍କଦ୍ୱାରା କଥିତ । ଅଷ୍ଟାଦଶ ଅଧ୍ୟାୟବିଶିଷ୍ଟ ଶ୍ରୀମଭଗବଦ୍ଗୀତାର ପ୍ରଥମ ଅଧ୍ୟାୟରେ ପାଣ୍ଡବ ପକ୍ଷ ଓ କୌରବ ପକ୍ଷ ବୀରମାନଙ୍କର ପରିଚୟ ଦିଆଯାଇଛି । କୁରୁକ୍ଷେତ୍ର ସରସ୍ୱତୀ ନଦୀର ଦକ୍ଷିଣଭାଗରେ ଅବସ୍ଥିତ । ମହାଭାରତ ଯୁଦ୍ଧାରମ୍ଭ ପୂର୍ବରୁ ବିଭିନ୍ନ ଶଙ୍ଖ ତଥା ଭେରୀ, ପଣବ, ଆନକ, ଗୋମୁଖ ଆଦି ବାଦ୍ୟ ଯନ୍ତ୍ରର ବର୍ଣ୍ଣନା କରାଯାଇଛି । ଯୁଦ୍ଧର ଉଭୟଙ୍କର ପରିଣାମ ମଧ୍ୟ ବର୍ଣ୍ଣନା କରାଯାଇଛି । ଯଥା କୁଳକ୍ଷୟ, କୁଳରେ ଅଧର୍ମର ବ୍ୟାପକ ପରିମାଣ, କୁଳସ୍ତ୍ରୀମାନଙ୍କର ଦୂଷଣତା ଫଳରେ ବର୍ଣ୍ଣସଙ୍କର-ମାନଙ୍କର ଜନ୍ମ ଫଳରେ କୁଳର ନରକଲାଭ, ତେଣୁ ଲୁପ୍ତପିଣ୍ଡକ୍ରିୟାଦ୍ୱାରା ପିତୃପୁରୁଷଙ୍କର ପତନ ହେବ । ଫଳରେ ସନାତନ କୁଳ ଧର୍ମର ବିନାଶ ହେବ। ଏଣୁ ଶ୍ରୀଅର୍ଜୁନ କୁଳକ୍ଷୟ ପାଇଁ ଯୁଦ୍ଧ ନ କରିବାକୁ ଇଚ୍ଛା ପ୍ରକଟ କରିଥିଲେ ।*

*ଭଗବାନ୍ ଶ୍ରୀକୃଷ୍ଣ ଅର୍ଜୁନଙ୍କ ସାଂସାରିକ ମାୟାମୋହ ଭଙ୍ଗ କରି ଯୁଦ୍ଧ ପାଇଁ କର୍ତ୍ତବ୍ୟ ବୋଲି ଉପଯୁକ୍ତ ତତ୍ତ୍ୱ ଉପଦେଶ ଦେବାକୁ ଆରମ୍ଭ କରିଥିଲେ । ଶ୍ରୀକୂର୍ମପୁରାଣାନ୍ତର୍ଗତ ଈଶ୍ୱରଗୀତାରେ ମଧ୍ୟ ପ୍ରଥମ ଅଧ୍ୟାୟରେ ସନତ୍‌କୁମାର, ସନାତନ, ସନନ୍ଦନ ଆଦି ମହର୍ଷିମାନେ ବିଭିନ୍ନ ଜିଜ୍ଞାସା ନେଇ ପ୍ରଶ୍ନ ପଚାରିବାରୁ ଭଗବାନ୍ ଈଶ୍ୱର ତତ୍ତ୍ୱଜ୍ଞାନର ଉପଦେଶ ଦେଇଥିଲେ । ମହର୍ଷିମାନେ ଯୋଗର ଅଷ୍ଟାଙ୍ଗ ସାଧନା କରି, ସଂସାର ତ୍ୟାଗ ରୂପକ ଜ୍ଞାନର ସାଧନା କରି ଯେଉଁ ଜ୍ଞାନକୁ ଅନ୍ୱେଷଣ କରୁଥିଲେ, ତାହା ଶ୍ରୀଶଙ୍କର ତାଙ୍କର ମୁଖପଦ୍ମରୁ ସାକ୍ଷାତ୍ ଶୁଣି ନିଜକୁ ଧନ୍ୟ ମନେ କଲେ । ଏକ ଆସନରେ ଶ୍ରୀଶଙ୍କରଙ୍କ ସହ ଶ୍ରୀମାନ୍ ବାସୁଦେବଙ୍କୁ ବିରାଜମାନ ଦେଖି ସେମାନେ ହରିହରଙ୍କର ଏକରୂପତା ଅନୁଭବ କଲେ । ଫଳରେ ମନରେ କୌଣସି ଦ୍ୱନ୍ଦ୍ୱଭାବ ସେମାନଙ୍କୁ ଆଉ ବିଚଳିତ କରିପାରିବ ନାହିଁ ବୋଲି ସିଦ୍ଧାନ୍ତ ନେଲେ । ଏହି ଅନୁପମ ଦୃଶ୍ୟ ଦେଖି ନିଜକୁ କୃତକୃତ୍ୟ ମନେକଲେ ।*

---*---

# ଦ୍ୱିତୀୟ ଅଧ୍ୟାୟ

## ଜ୍ଞାନଯୋଗାଧ୍ୟାୟ

*(ଏହି ଅଧ୍ୟାୟରେ ଜ୍ଞାନଯୋଗ ଏବଂ କର୍ମଯୋଗର ସିଦ୍ଧାନ୍ତ ବିସ୍ତାର ଭାବରେ ଉପନିଷଦ୍‌ର ସିଦ୍ଧାନ୍ତ ଅନୁସାରେ କୁହାଯାଇଥିବା ଜ୍ଞାନଯୋଗର ଶ୍ରେଷ୍ଠତା ପ୍ରତିପାଦନ କରାଯାଇଛି । ଏଣୁ ଏହି ଅଧ୍ୟାୟର ନାମ ଜ୍ଞାନଯୋଗ ଅଧ୍ୟାୟ ।)*

ଅବାଚ୍ୟମେତଦ୍ ବିଜ୍ଞାନଂ ମମ ଗୁହ୍ୟଂ ସନାତନମ୍ ।
ଯନ୍ନ ଦେବା ବିଜାନନ୍ତି ଯତନ୍ତୋଽପି ଦ୍ୱିଜାତୟଃ ॥୧
ଇଦଂ ଜ୍ଞାନଂ ସମାଶ୍ରିତ୍ୟ ବ୍ରାହ୍ମୀଭୂତା ଦ୍ୱିଜୋତ୍ତମାଃ ।
ନ ସଂସାରଂ ପ୍ରପଦ୍ୟନ୍ତେ ପୂର୍ବେଽପି ବ୍ରହ୍ମବାଦିନଃ ॥୨
ଗୁହ୍ୟାଦ୍ ଗୁହ୍ୟତମଂ ସାକ୍ଷାଦ୍ ଗୋପନୀୟଂ ପ୍ରୟତ୍ନତଃ ।
ବକ୍ଷ୍ୟେ ଭକ୍ତିମତାମଦ୍ୟ ଯୁଷ୍ମାକଂ ବ୍ରହ୍ମବାଦିନାମ୍ ॥୩

ଶ୍ରୀଭଗବାନ୍ ଦେବାଧିଦେବ ମହାଦେବ ଶଙ୍କର ଋଷିମାନଙ୍କୁ ପୂର୍ବୋକ୍ତ ପ୍ରଶ୍ନର ଉତ୍ତର ଦେବାକୁ ଯାଇ କହିଲେ- ହେ ମୁନିଗଣ ! ମୁଁ ଯେଉଁ ବିଜ୍ଞାନର କଥା ଆପଣମାନଙ୍କୁ କହିବାକୁ ଯାଉଛି ତାହା ଅନଧିକାରୀଙ୍କ ପାଇଁ ଶୁଣିବାର ଯୋଗ୍ୟ ନୁହେଁ ଏବଂ ଅତ୍ୟନ୍ତ ଗୋପନୀୟ ଓ ସନାତନ ଅଟେ । ଯାହାକି ଦେବତାମାନେ ତଥା ବିଦ୍ୱାନ୍ ବ୍ରାହ୍ମଣମାନେ ଅତ୍ୟନ୍ତ ଯତ୍ନ କରି ମଧ୍ୟ ଜାଣିବା ପାଇଁ ସମର୍ଥ ହୋଇପାରନ୍ତି ନାହିଁ । ଏହି ଜ୍ଞାନକୁ ଜାଣିକରି ଅନେକ ବ୍ରହ୍ମବାଦୀ ଦ୍ୱିଜୋତ୍ତମ ବ୍ରହ୍ମଭାବକୁ ପ୍ରାପ୍ତ କରିଥାନ୍ତି । ଯାହାର ପ୍ରଭାବରେ ପୁନର୍ବାର ଜନ୍ମମରଣରୂପ ସଂସାରକୁ ପ୍ରାପ୍ତ ହୋଇ ନଥାନ୍ତି । ଗୁହ୍ୟଠାରୁ ମଧ୍ୟ ଗୁହ୍ୟତମ ଜ୍ଞାନକୁ ଆଜି ଭକ୍ତିଯୁକ୍ତ ତଥା ବେଦର ରହସ୍ୟକୁ ଜାଣିପାରୁଥିବା ଆପଣ ସମସ୍ତଙ୍କୁ ମୁଁ କହୁଛି । ଏହି ତତ୍ତ୍ୱକୁ ଯତ୍ନର ସହ ଗୁପ୍ତ ରଖନ୍ତୁ, କାରଣ ଅନଧିକାରୀଙ୍କୁ ଏହି ଜ୍ଞାନତତ୍ତ୍ୱ କୁହାଯାଏ ନାହିଁ ।

ଆତ୍ମା ଯଃ କେବଳଃ ସ୍ୱଚ୍ଛଃ ଶୁଦ୍ଧଃ ସୂକ୍ଷ୍ମଃ ସନାତନଃ ।
ଅସ୍ତି ସର୍ବାନ୍ତରଃ ସାକ୍ଷାଚ୍ଚିନ୍ମାତ୍ରସ୍ତମସଃ ପରଃ ॥୪
ସୋଽନ୍ତର୍ଯ୍ୟାମୀ ସ ପୁରୁଷଃ ସ ପ୍ରାଣଃ ସ ମହେଶ୍ୱରଃ ।
ସ କାଲୋଽତ୍ର ତଦବ୍ୟକ୍ତଂ ସ ଚ ବେଦ ଇତି ଶ୍ରୁତିଃ ॥୫

ଏହି ଆତ୍ମତତ୍ତ୍ୱ ଯାହାଦ୍ୱାରା ଏହି ଶରୀର ନାନା ପ୍ରକାରର ସଚେତନତ୍ୱ ରୂପ ଓ ପ୍ରଚେଷ୍ଟାରେ ସମର୍ଥ ହୋଇଥାଏ । କେବଳ ନିର୍ମଳ ତଥା ଅନ୍ତର ମନ, କାମ, କ୍ରୋଧଶୂନ୍ୟ ଶୁଦ୍ଧ ନିରବୟବ ଅଟେ ଏବଂ ସୂକ୍ଷ୍ମ ତଥା ଜଡରୂପ ବିକାର ହୋଇ ନଥିବାରୁ ସନାତନ ତଥା ସମସ୍ତ ପ୍ରାଣୀମାନଙ୍କର ଅନ୍ତଃକରଣରେ ଚିନ୍ମାତ୍ର ରୂପ ସ୍ୱରୂପ ଚୈତନ୍ୟ ଭାବରେ ସ୍ଫୁରିତ ହୋଇଥାଏ । ତାହା ପ୍ରକୃତିଠାରୁ ଭିନ୍ନ ହୋଇ ସମସ୍ତ ପ୍ରପଞ୍ଚର ସାକ୍ଷୀ ଓ ସମସ୍ତ ସୃଷ୍ଟିର ନିୟାମକ ତେଣୁ ଅନ୍ତର୍ଯ୍ୟାମୀ ସମସ୍ତ ପ୍ରାଣୀ ଶରୀରରେ ବ୍ୟାପକ ହୋଇଥିବାରୁ ପୁରୁଷ ଏବଂ ସମସ୍ତ ପ୍ରାଣୀମାନଙ୍କର କ୍ରିୟାତ୍ମକ ଶକ୍ତି ପ୍ରଦାନ କରିପାରୁଥିବା ପ୍ରାଣ ଅଟେ । ସମସ୍ତଙ୍କର ଈଶ୍ୱର ହୋଇଥିବାରୁ ସେ ମହେଶ୍ୱର ଅଟନ୍ତି । ସମସ୍ତ କାର୍ଯ୍ୟ ଜଗତର ଅନ୍ତିମ ସମୟରେ ସଂହାରକର୍ତ୍ତା ହୋଇଥିବାରୁ କାଳ ଅଟନ୍ତି । ସମସ୍ତ ଜଗତକୁ ନିଜ ପାଖରେ ଲୀନ କରିପାରୁଥିବା ଅବ୍ୟକ୍ତ ଅଟନ୍ତି । ଏହିପରି ବେଦ ଆତ୍ମାର ସ୍ୱରୂପକୁ **ସ୍ପଷ୍ଟ କରିଛି** । କୃଷ୍ଣ ଯଜୁର୍ବେଦର ଶ୍ୱେତାଶ୍ୱତର ଉପନିଷଦରେ ମଧ୍ୟ ଏହିପରି ବେଦର ଆଦେଶ ଅଛି ଯେ, ''ଏକୋ ଦେବଃ ସର୍ବଭୂତେଷୁ ଗୂଢଃ ସର୍ବବ୍ୟାପୀ ସର୍ବଭୂତାନ୍ତରାତ୍ମା । କର୍ମାଧ୍ୟକ୍ଷଃ ସର୍ବଭୂତାଧିବାସଃ ସାକ୍ଷୀ ଚେତା କେବଳୋ ନିର୍ଗୁଣଶ୍ଚ ॥'' (୬/୧୧)

ଅର୍ଥାତ୍ ଏକମାତ୍ର ଦେବ ସମସ୍ତ ପ୍ରାଣୀମାନଙ୍କର ବ୍ୟାପକ ରୂପରେ ଲୁକ୍କାୟିତ ହୋଇଥାଏ । ସେ ହିଁ ସମସ୍ତ ପ୍ରାଣୀମାନଙ୍କର ଅନ୍ତରାତ୍ମା ଅଟେ । ସମସ୍ତ କର୍ମର ସ୍ୱାମୀ ଅଟେ । ସମସ୍ତ ପ୍ରପଞ୍ଚର ସାକ୍ଷୀ, ଚେତନସ୍ୱରୂପ ଏବଂ କେବଳ ନିର୍ଗୁଣ ସ୍ୱରୂପବାଲା ଅଟେ । କୈବଲ୍ୟୋପନିଷଦ୍‌ରେ ମଧ୍ୟ ''ସ ଏବ ବିଷ୍ଣୁଃ ସ ପ୍ରାଣଃ ସ କାଳୋଽଗ୍ନିଃ ସ ଚନ୍ଦ୍ରମାଃ'' (୧/୮) । ଅର୍ଥାତ୍ ସେ ହିଁ ବିଷ୍ଣୁ, ସେ ହିଁ ପ୍ରାଣ, ସେ ହିଁ କାଳ, ଅଗ୍ନି ଏବଂ ଚନ୍ଦ୍ରମା ଆଦି ସ୍ୱରୂପ ଅଟେ । ଶ୍ୱେତାଶ୍ୱତରୋପନିଷଦ୍‌ରେ କୁହାଯାଇଛି - ''ତମୀଶ୍ୱରାଣାଂ ପରମଂ ମହେଶ୍ୱରଂ ତଂ ଦେବତାନାଂ ପରମଂ ଚ ଦୈବତମ୍'' (ଶ୍ୱେ.ଉ. ୬/୭) । ଅର୍ଥାତ୍ ଏହି ଈଶ୍ୱରଙ୍କର ମଧ୍ୟ ଈଶ୍ୱର ହୋଇଥିବାରୁ ମହେଶ୍ୱର କୁହାଯାଏ ତଥା ଦେବତାଙ୍କର ମଧ୍ୟ ଦେବତା ହୋଇଥିବାରୁ ପରମାତ୍ମା କୁହାଯାଏ । ବୃହଦାରଣ୍ୟକୋପନିଷଦ୍‌ରେ କୁହାଯାଇଛି- ''ଅନ୍ତରୋଽୟମୟତ୍ୟେଷ ତ ଆତ୍ମାନ୍ତର୍ଯ୍ୟାମ୍ୟମୃତୋ ଦୃଷ୍ଟୋ ଦ୍ରଷ୍ଟାଽଶ୍ରୁତଃ'' (ବୃହ.ଉ. ୪/୭/୨୩) । ଅର୍ଥାତ୍ ଅନ୍ତଃକରଣରେ ରହି ସମସ୍ତ ନିୟମ ନ କରୁଥିବାରୁ ଆତ୍ମାକୁ ଅନ୍ତର୍ଯ୍ୟାମୀ କୁହାଯାଏ । ଏହିପରି ଶ୍ରୁତିପ୍ରମାଣରେ ପ୍ରମାଣିତ ଆତ୍ମାର ନିରୂପଣ ଏହିଠାରୁ ଆରମ୍ଭ କରି କୈଳାସପତି ସମସ୍ତ ଉପନିଷଦ୍

ବିଦ୍ୟାର ରହସ୍ୟ ମୁନିମାନଙ୍କୁ କହିଲେ । ଏହି ତତ୍ତ୍ୱର ସ୍ପଷ୍ଟ ରୂପରେ ବିବେଚନ ପ୍ରକରଣ ଅନୁସାରେ କରାଯାଇଛି ।

**ଅସ୍ମାଦ୍ଧି ଜାୟତେ ବିଶ୍ୱମତ୍ରୈବ ପ୍ରବିଲୀୟତେ ।**
**ସମାୟୀ ମାୟୟା ବଦ୍ଧଃ କରୋତି ବିବିଧାସ୍ତାନ୍ ॥୬**
**ନ ଚାପ୍ୟ ଯଂ ସଂସରତି ନ ସଂସାରମୟଃ ପ୍ରଭୁଃ ।**
**ନାୟଂ ପୃଥ୍ୱୀ ନ ସଲିଳଂ ନ ତେଜଃ ପବନୋ ନଭଃ ॥୭**
**ନ ପ୍ରାଣୋ ନ ମନୋଽବ୍ୟକ୍ତଂ ନ ଶବ୍ଦଃ ସ୍ପର୍ଶ ଏବ ଚ ।**
**ନ ରୂପରସଗନ୍ଧାଶ୍ଚ ନାହଂ କର୍ତ୍ତା ନ ବାଗପି ॥୮**
**ନ ପାଣିପାଦୌ ନୋ ପାୟୁର୍ନ ଚୋପସ୍ଥଂ ଦ୍ୱିଜୋତ୍ତମାଃ ।**
**ନ ଚ କର୍ତ୍ତା ନ ଭୋକ୍ତା ବା ନ ଚ ପ୍ରକୃତିପୁରୁଷୌ ॥ ॥୯**

ସମସ୍ତ ଜଗତର କାରଣ ଆତ୍ମା ଅଟେ । କାରଣ ଆତ୍ମାରୁ ସମସ୍ତ ବିଶ୍ୱର ସୃଷ୍ଟି ଓ ଆତ୍ମାରେ ସମସ୍ତ ବିଶ୍ୱର ଲୟ ବେଦରେ ବର୍ଣ୍ଣନା ରହିଛି । ''ଯତୋ ବା ଇମାନି ଭୂତାନି ଜାୟନ୍ତେ, ଯେନ ଜାତାନି ଜୀବନ୍ତି ଯଦ୍ ପ୍ରୟନ୍ତ୍ୟଭିବିଶନ୍ତି ତଦ୍ ବିଜିଜ୍ଞାସସ୍ୱ ତଦ୍ ବ୍ରହ୍ମ'' (ତୈ.ଉ. ୧) । ଅର୍ଥାତ୍ ଏହି ବ୍ରହ୍ମଙ୍କଠାରୁ ସମସ୍ତ ଜଗତ ଉତ୍ପନ୍ନ ହୋଇ ଏହି ବ୍ରହ୍ମରେ ହିଁ ପରିପ୍ରକାଶ ହୋଇଥାଏ । ତଥା ଅନ୍ତରେ ବା ଶେଷରେ ଏହି ଆତ୍ମତତ୍ତ୍ୱରେ ସମସ୍ତ ଜଗତ ଲୀନ ହୋଇଥାଏ । ଏହି ଆତ୍ମତତ୍ତ୍ୱକୁ ଜାଣିବା ପାଇଁ ଜିଜ୍ଞାସା କରିବା ଉଚିତ୍ ''ମୟ୍ୟେବ ସକଳଂ ଜାତଂ ମୟି ସର୍ବଂ ପ୍ରତିଷ୍ଠିତମ୍ । ମୟି ସର୍ବଂ ଲୟଂ ଯାତି ତଦ୍ ବ୍ରହ୍ମାଦ୍ୱୟମସ୍ମ୍ୟହମ୍'' (କୈ.ଉ. ୧/୧୯) । ଅର୍ଥାତ୍ ବ୍ରହ୍ମଙ୍କ ପାଖରୁ ସମସ୍ତ ଜଗତ ଉତ୍ପନ୍ନ ହୋଇଥାଏ । ପୁଣି ସେହି ବ୍ରହ୍ମରେ ସକଳ ଜଗତ ପ୍ରତିଷ୍ଠିତ ହୋଇଥାଏ । ତଥା ଶେଷରେ ସେହି ବ୍ରହ୍ମତତ୍ତ୍ୱରେ ସମସ୍ତ ଜଗତ ଲୟପ୍ରାପ୍ତ ହୋଇଥାଏ । ସେହି ଅଦ୍ୱିତୀୟ ବ୍ରହ୍ମ ମୁଁ ଅଟେ । ଏହି ଦୁଇ ପ୍ରମାଣଦ୍ୱାରା ବ୍ରହ୍ମଙ୍କୁ ଉପାଦାନ ନିମିତ୍ତ ଉଭୟ କାରଣତ୍ୱ ସିଦ୍ଧ ବୋଲି କୁହାଯାଇଛି । ମାୟାଶକ୍ତିର ସ୍ଫୁରଣଦ୍ୱାରା ତାହା ମାୟି ଆତ୍ମା ନାନାପ୍ରକାରର ରୂପ ଧାରଣ କରିଥାଏ । ଏହି ବିଷୟରେ ବେଦରେ ବର୍ଣ୍ଣନା କରାଯାଇଛି ଯେ, ''ଇନ୍ଦ୍ରୋ ମାୟାଭିଃ ପୁରୁରୂପମୀୟତେ'' (ବୃ.ଉ. ୪/୫/୧୯) । ଅର୍ଥାତ୍ ବ୍ରହ୍ମ ନିଜର ମାୟାଶକ୍ତିଦ୍ୱାରା ନାନାପ୍ରକାରର ରୂପକୁ ଧାରଣ କରିଥାଏ । ''ଅସ୍ମାନ୍‌ମାୟୀ ସୃଜତେ ବିଶ୍ୱମେତତ୍ତସ୍ମିଂଶ୍ଚାନ୍ୟୋ ମାୟୟା ସନ୍ନିରୁଦ୍ଧଃ'' (ଶ୍ୱେ.ଉ. ୪/୯) । ଅର୍ଥାତ୍ ମାୟାରେ ହିଁ ମାୟାପତି ମହେଶ୍ୱର ଏହି ବିଶ୍ୱକୁ ଉତ୍ପନ୍ନ କରନ୍ତି । ତଥା ବିଶ୍ୱରେ ସେହି

ମାୟାରୁ ଅନ୍ୟ ଯେଉଁ ଜୀବତତ୍ତ୍ୱ ଅଟନ୍ତି ସେସବୁ ନାନାପ୍ରକାର ବାସନାଦ୍ୱାରା ବନ୍ଧା ହୋଇଥାନ୍ତି । କିନ୍ତୁ ପରମାର୍ଥ ଭାବରେ ଆତ୍ମତତ୍ତ୍ୱ ସଂସାର ଭାବକୁ ପ୍ରାପ୍ତ କରିଥାଏ ନା ସଂସାରର ବିକାର ଅଟେ । କିନ୍ତୁ ସେହି ଆତ୍ମତତ୍ତ୍ୱ ସମସ୍ତ ଜାଗତିକ ପ୍ରାଣୀମାନଙ୍କର ପ୍ରଭୁ ଅଟେ । ହେ ଦ୍ୱିଜୋତ୍ତମ ମୁନିଗଣ ! ସେହି ଆତ୍ମତତ୍ତ୍ୱ ପୃଥିବୀ ନୁହେଁ, ଜଳ ନୁହେଁ, ତେଜ ନୁହେଁ, ପ୍ରାଣ ନୁହେଁ, ବାୟୁ ନୁହେଁ, ଆକାଶ ନୁହେଁ, ମନ ନୁହେଁ, ସମସ୍ତ କାର୍ଯ୍ୟ ବସ୍ତୁର କାରଣରୂପ ଅବ୍ୟକ୍ତ ଅଟେ । ତାହା ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧାତ୍ମକ ପଞ୍ଚବିଷୟ ନୁହେଁ, ପଞ୍ଚବିଷୟର ସ୍ୱରୂପମାତ୍ର । ଏହି ଆତ୍ମତତ୍ତ୍ୱ ପ୍ରାଣୀଙ୍କର ଅହଂକାର ନୁହେଁ । ଏହାକୁ ଗ୍ରହଣ କରିପାରୁଥିବା ପଞ୍ଚ ଜ୍ଞାନେନ୍ଦ୍ରିୟ ମଧ୍ୟ ନୁହେଁ । ଏହା ହସ୍ତ, ପାଦ, ପାୟୁ, ଉପସ୍ଥ, ମୁଖ ନାମକ ପଞ୍ଚ କର୍ମେନ୍ଦ୍ରିୟର ଭିତରେ ଥାଏ । ସେହି ଆତ୍ମତତ୍ତ୍ୱ କର୍ତ୍ତା ଭୋକ୍ତା ନୁହେଁ କିମ୍ବା ପ୍ରକୃତିପୁରୁଷ ରୂପରେ ନୁହେଁ । କିନ୍ତୁ ମନ ଓ ବାଣୀଦ୍ୱାରା ଅଗୋଚର ଏବଂ ବିଲକ୍ଷଣ ଅଟେ । ଏହି ଭାବରେ ପ୍ରମାଣ ବେଦରେ ରହିଛି । ''ନ ପୁଣ୍ୟ ପାପ ମମ ନାସ୍ତି ନ ଶୋକ ଜନ୍ମ ଦେହେନ୍ଦ୍ରିୟବୁଦ୍ଧିରସ୍ତି । ନ ଭୂମିରାପୋ ନ ଚ ବହ୍ନିରସ୍ତି ନ ଚାନିଲୋ ମେଽସ୍ତି ନ ଚାମ୍ବରଞ୍ଚ'' (କୈ.ଉ. ୨/୩,୪) । ଅର୍ଥାତ୍ ଆତ୍ମାରେ ପୁଣ୍ୟ ନାହିଁ, ପାପ ନାହିଁ, ଏହାର ଜନ୍ମ ନାହିଁ, ନାଶ ନାହିଁ । ଏହା ଦେହ ନୁହେଁ, ଇନ୍ଦ୍ରିୟ ନୁହେଁ, ବୁଦ୍ଧି ନୁହେଁ । ଏହା ପୃଥ୍ୱୀ, ଜଳ, ତେଜ, ବାୟୁ ଅଥବା ଆକାଶ ନୁହେଁ ।

**ନ ମାୟା ନୈବ ଚ ପ୍ରାଣା ନ ଚୈବ ପରମାର୍ଥତଃ ।**
**ଯଥା ପ୍ରକାଶତମସୋଃ ସମ୍ବନ୍ଧୋ ନୋପପଦ୍ୟତେ ॥୧୦**
**ତଦ୍ୱଦୈକ୍ୟଂ ନ ସମ୍ବନ୍ଧଃ ପ୍ରପଞ୍ଚପରମାତ୍ମନୋଃ ।**
**ଛାୟାତପୌ ଯଥା ଲୋକେ ପରସ୍ପରବିଲକ୍ଷଣୌ ॥୧୧**
**ତଦ୍ୱତ୍ପ୍ରପଞ୍ଚ ପୁରୁଷୌ ବିଭିନ୍ନୌ ପରମାର୍ଥତଃ ।**
**ତଥାତ୍ମା ମଳିନଃ ସୃଷ୍ଟୋ ବିକାରୀସ୍ୟାସ୍ୱରୂପତଃ ॥୧୨**

ମୁଁ ମାୟା ନୁହେଁ, ପ୍ରାଣ ମଧ୍ୟ ନୁହେଁ, ଅର୍ଥାତ୍ ପରମାର୍ଥରେ ମୁଁ କେବଳ ଆତ୍ମତତ୍ତ୍ୱ ହିଁ ଅଟେ । ଏହା ବେଦରେ ମଧ୍ୟ କୁହାଯାଇଛି ।

ନ ନିରୋଧୋ ନ ଚୋତ୍ପତ୍ତିର୍ନ ବନ୍ଧୋ ନ ଚ ଶାସନମ୍ ।
ନ ମୁମୁକ୍ଷା ନ ମୁକ୍ତିଶ୍ଚ ଇତ୍ୟେଷା ପରମାର୍ଥତା ॥(ବ୍ର.ବି.ଉ. ୧୦)

ଅର୍ଥାତ୍ ପରମାର୍ଥ ଦଶାରେ ମୁଁ ଉତ୍ପତ୍ତି, ବିନାଶ, ବନ୍ଧନ, ଶାସନ, ମୁକ୍ତ ହେବାର ଇଚ୍ଛା ଅଥବା ମୁକ୍ତି ଆଦି ନୁହେଁ, ଏହାକୁ ତ ପରମାର୍ଥ ଦଶା କୁହାଯାଏ ।

ଏହିପରି ଅଧ୍ୟାରୋପ ଅପବାଦ ନ୍ୟାୟରେ ଜଗତର ଉତ୍ପତ୍ତି ଏବଂ ଲୟର କ୍ରମର ଉପଦେଶ ପୂର୍ବୋକ୍ତ ଶ୍ରୁତି ଅନୁସାରେ ଏହି ଶ୍ଳୋକରେ କୁହାଯାଇଛି । ଏହି ବିଷୟରେ ପୂର୍ବୋକ୍ତ କଥାର ପୃଷ୍ଟି ପାଇଁ ପ୍ରକାଶ ତଥା ଅନ୍ଧାକାରର ଦୃଷ୍ଟାନ୍ତ ଦିଆଯାଇଛି । ଯେପରି ଆଲୋକ ଓ ଅନ୍ଧକାର ପରସ୍ପର ବିରୋଧୀ ହୋଇଥିବାରୁ ଏକ କେବେହେଲେ ହୋଇପାରିବେ ନାହିଁ, ସେହିପରି ଦେଖାଯାଉଥିବା ଜଗତ ଓ ପରମାତ୍ମାର ସମ୍ବନ୍ଧ ମଧ୍ୟ ହୋଇପାରିବ ନାହିଁ । ଆହୁରି ମଧ୍ୟ ଯେପରି ଛାୟା ଏବଂ ଖରା ସଂସାରରେ ପରସ୍ପର ବିରୋଧ ଅଟେ, ସେହିପରି ପରମାର୍ଥରେ ଜଗତ ଏବଂ ଶରୀରରେ ଥିବା ପୁରୁଷ ସଂଜ୍ଞାତ୍ମକ ବ୍ୟବହାର ମଧ୍ୟ ହୋଇପାରିବ ନାହିଁ । ଅର୍ଥାତ୍ ଦ୍ୱୈତଜନିତ କିଛି ମଧ୍ୟ ପରମାର୍ଥରେ ବ୍ୟବହାର୍ଯ୍ୟ ନୁହେଁ । କାରଣ ଦ୍ୱୈତରେ ବିରୋଧି ଭାବର ସ୍ଥିତି ଅଛି । ଯେଉଁଠାରେ ଦ୍ୱୈତଭାବ ଅଛି, ସେହିଠାରେ ଅନେକ ପ୍ରକାର ଅନର୍ଥ ମଧ୍ୟ ଅଛି । ଯଦି ପରମାର୍ଥ ଦଶାରେ ଦ୍ୱୈତଭାବାପନ୍ନ ହେବ ତେବେ ସଂସାର ସଦୃଶ ହୋଇଯିବ । ଏଣୁ ଏହାର ବିଲକ୍ଷଣ ଅଦ୍ୱୈତସ୍ୱରୂପ, ଏହାର ସ୍ଥିତି ମାନି ଉପଦେଶ ଦିଆଯାଇଛି । ଏହା ହିଁ ବୈଦିକ ସିଦ୍ଧାନ୍ତ ଅଟେ । କାରଣ ଉପନିଷଦରେ ମଧ୍ୟ ପରମାର୍ଥରେ ଏକ ଆତ୍ମା ହିଁ ସ୍ୱୀକାର କରାଯାଇଛି । ''ଆତ୍ମା ବା ଇଦମଗ୍ର ଏକ ଏବାସୀତ୍'' (ଐ.ଉ. ୧) । ଅର୍ଥାତ୍ ପରମାର୍ଥାବସ୍ଥାରେ କେବଳ ଏକ ଆତ୍ମା ମୁଁ ଅଟେ । ଏହି ଦଶାରେ ଦ୍ୱୈତର ଲେଶ ମଧ୍ୟ ନଥିଲା । ଏହି କଥାକୁ ସହସ୍ର ବେଦର ବଚନ ପ୍ରତିପାଦନ କରିଛି । ଏଣୁ ବୈଦିକ ଜ୍ଞାନର ପରମାର୍ଥ ଅବସ୍ଥାର ଉପଦେଶ ଏହି ଶ୍ଳୋକଦ୍ୱାରା କୁହାଯାଇଛି, କିନ୍ତୁ ପରବର୍ତ୍ତୀ ଶ୍ଳୋକରେ ତର୍କ ପ୍ରମାଣଦ୍ୱାରା ଏହି ସିଦ୍ଧାନ୍ତକୁ ପୁଷ୍ଟି କରାଯାଇଛି ।

**ନହି ତସ୍ୟ ଭବେନ୍ମୁକ୍ତିର୍ଜନ୍ମାନ୍ତରଶତୈରପି ।**
**ପଶ୍ୟନ୍ତି ମୁନୟୋ ମୁକ୍ତାଃ ସ୍ୱାତ୍ମାନଂ ପରମାର୍ଥତଃ ॥୧୩**
**ବିକାରହୀନଂ ନିର୍ଦ୍ୱନ୍ଦ୍ୱମାନନ୍ଦାତ୍ମାନମବ୍ୟୟମ୍ ।**
**ଅହଂ କର୍ତ୍ତା ସୁଖୀଦୁଃଖୀ କୃଶଃ ସ୍ଥୂଳେତି ଯା ମତିଃ ॥୧୪**

ଯଦି ଆତ୍ମା ସ୍ୱରୂପରେ ମଳିନ କିମ୍ବା ଅନ୍ୟ କୌଣସି ବସ୍ତୁର କାର୍ଯ୍ୟ ହେବ ତେବେ ତ ବିକାରୀ ହୋଇଯିବ । ସ୍ୱାଭାବିକ ଇଚ୍ଛା ଦ୍ୱେଷାଦି ଗୁଣଠାରୁ ଯୁକ୍ତ ହୋଇଥିବାରୁ କୋଟି କୋଟି ଜନ୍ମରେ ତାର ମୁକ୍ତି ହୋଇପାରିବ ନାହିଁ । ଏହି ବିଷୟ ଅଦ୍ୱୈତବେଦାନ୍ତ ଦର୍ଶନର ବ୍ରହ୍ମସୂତ୍ର ପ୍ରମାଣିତ କରିଛି । ''ନାତ୍ମା ଶ୍ରୁତେର୍ନିତ୍ୟତ୍ୱାଚ୍ଚ ତାଭ୍ୟଃ'' (ବ୍ର.ସୂ. ୨/୩/୧୭) । ଅର୍ଥାତ୍ ବେଦରେ ମଧ୍ୟ

ଆତ୍ମତତ୍ତ୍ୱର ନିତ୍ୟତା ପ୍ରତିପାଦିତ ହୋଇଥିବାରୁ ଆତ୍ମା ନିତ୍ୟ ଅଟେ । ତେଣୁ ଏହି ପଦାର୍ଥର କାର୍ଯ୍ୟତ୍ୱ ଅଥବା ସ୍ୱାଭାବିକ ମଳିନତା ଆତ୍ମାରେ ନାହିଁ। ସମସ୍ତ ପଦାର୍ଥଠାରୁ ମୁକ୍ତ ଶୁଦ୍ଧାନ୍ତଃକରଣକାରୀ ମୁନିଗଣ ପରମାର୍ଥ ରୂପରେ ବିକାରହୀନ ଅଦ୍ୱୈତ ଏକ ରସ, ଆନନ୍ଦସ୍ୱରୂପ ରୂପ ଆତ୍ମା ସ୍ୱରୂପକୁ ଦେଖିଥାଏ ।

**ସା ଚାହଙ୍କାରକର୍ତ୍ତୃତ୍ୱାଦାତ୍ମନ୍ୟାରୋପିତାଜନୈଃ ।**
**ବଦନ୍ତି ବେଦବିଦ୍ୱାଂସଃ ସାକ୍ଷିଣଂ ପ୍ରକୃତେଃ ପରମ୍ ॥୧୫**
**ଭୋକ୍ତାରମକ୍ଷରଂ ବୁଦ୍ଧଂ ସର୍ବତ୍ର ସମବସ୍ଥିତମ ।**
**ତସ୍ମାଦଜ୍ଞାନମୂଳୋ ହି ସଂସାରଃ ସର୍ବଦେହୀନାମ୍ ॥୧୬**

ଆତ୍ମତତ୍ତ୍ୱରେ କର୍ତ୍ତବ୍ୟ, ସୁଖ, ଦୁଃଖ, ଦୁର୍ବଳତା, ମୋଟା ହେବା ଆଦି ଅନୁଭୂତି ଏସବୁ ଅହଙ୍କାରରୁ ଉତ୍ପନ୍ନ ହୋଇ ଆତ୍ମତତ୍ତ୍ୱରେ ଆରୋପମାତ୍ର ହୋଇଥାଏ। ଅର୍ଥାତ୍ ଆତ୍ମା ଏହି କର୍ତ୍ତୃତ୍ୱାଦି ଭାବରୁ ସର୍ବଦା ଦୂରରେ ଥାଏ । ଆଧାତ୍ମିକ ସମ୍ବନ୍ଧଦ୍ୱାରା ଏହିସବୁ ପ୍ରତୀତି ଆତ୍ମାରେ ହୋଇଥାଏ । ବେଦଜ୍ଞ ବିଦ୍ୱାନ୍ ବ୍ରହ୍ମଙ୍କ ଆତ୍ମାକୁ ପ୍ରକୃତିଠାରୁ ଭିନ୍ନ, ଶ୍ରେଷ୍ଠ ସାକ୍ଷୀ, ସମସ୍ତ ଜଗତର ପାଳକ ଅଥବା ଜୀବ ରୂପରେ ସୁଖଦୁଃଖର ଭୋକ୍ତା, ଅକ୍ଷର, ଜ୍ଞାନରୂପ ସବୁଠାରେ ଏହି ଆତ୍ମତତ୍ତ୍ୱର ସ୍ଥିତି ରହିଛି । ଅତଏବ ଏହି କଥା ସିଦ୍ଧ ହେଉଛି ଯେ ସମସ୍ତ ପ୍ରାଣୀ ଯେଉଁ କର୍ତ୍ତୃତ୍ୱାଦି ଭାବଦ୍ୱାରା ଯୁକ୍ତ ସଂସାର ପ୍ରତୀତି ହେଉଛି, ଏହା ସବୁ ଅଜ୍ଞାନସୂଚକ ଅଟେ ।

**ଅଜ୍ଞାନାଦନ୍ୟଥା ଜ୍ଞାନା ତତ୍ତ୍ୱଂ ପ୍ରକୃତିସଙ୍ଗତମ୍ ।**
**ନିତ୍ୟୋଦିତଂ ସ୍ୱୟଂ ଜ୍ୟୋତିଃ ସର୍ବଗଃ ପୁରୁଷଃ ପରଃ ॥୧୭**
**ଅହଙ୍କାରବିବେକେନ କର୍ତ୍ତାହମିତି ମନ୍ୟତେ ।**
**ପଶ୍ୟନ୍ତି ଋଷୟୋଽବ୍ୟକ୍ତଂ ନିତ୍ୟଂ ସଦସଦାତ୍ମକମ୍ ॥ ୧୮**

ଯେତେବେଳେ ଅଜ୍ଞାନବାଧିତ ହୋଇଯିବ ଲୋପ ପାଇଯିବ ଯଥାର୍ଥଜ୍ଞାନ ଉତ୍ପନ୍ନ ହେବ, ସେତେବେଳେ ମୂଳ ପ୍ରକୃତି ସହିତ ନିତ୍ୟ, ପ୍ରକାଶାତ୍ମା ସ୍ୱୟଂ ଜ୍ୟୋତିଃସମ୍ପନ୍ନ, ସର୍ବବ୍ୟାପକ ପରମଶ୍ରେଷ୍ଠ ପୁରୁଷର ତତ୍ତ୍ୱଜ୍ଞାନ ହୋଇଥାଏ । ଏହି ଆତ୍ମା ଅହଙ୍କାର ବୃତ୍ତିର ସାହଚର୍ଯ୍ୟରେ ନିଜକୁ କର୍ତ୍ତା ପରି ମନେକରେ । ହେ ଋଷିଗଣ ଅବ୍ୟକ୍ତ ତଥା ନିତ୍ୟ, ସଦ୍ ଅସଦ୍ ଉଭୟାତ୍ମକ ସ୍ୱରୂପକୁ ଯେ ଜାଣେ ସେ ଆତ୍ମାକୁ ପ୍ରତ୍ୟକ୍ଷ ଦେଖିପାରେ । କାରଣ ନାମ ରୂପାତ୍ମକ ଜଗତ ଯେ ପର୍ଯ୍ୟନ୍ତ ଆତ୍ମାରେ ପ୍ରତୀତି ହୋଇ ରହିଥାଏ, ସେ ପର୍ଯ୍ୟନ୍ତ ଏହାକୁ ସତ୍ କୁହାଯାଏ ଓ ବ୍ରହ୍ମଜ୍ଞାନ ଉତ୍ପନ୍ନ ପରେ ଯେତେବେଳେ ଜଗତ୍ ନିବୃତ୍ତ ହୋଇଯାଏ, ସେତେବେଳେ

ଏହାକୁ ଅସତ୍ କୁହାଯାଏ । ଏହି ପ୍ରକାରର ଜଗତର ସତ୍ ଅସତ୍ ଦୁଇ ସ୍ୱରୂପ ପରଂବ୍ରହ୍ମରେ କାରଣ ରୂପରେ ରହିଥାଏ । ତେଣୁ ଏହାକୁ ସତ୍ ଅସତ୍ ଉଭୟାତ୍ମକ କୁହାଯାଏ । ବେଦ ମଧ୍ୟ ଏହି ଭାବକୁ ବର୍ଣ୍ଣନ କରିଛି ।

''ସର୍ବଂ ଖଲ୍ୱିଦଂ ବ୍ରହ୍ମ ନେହ ନାନାସ୍ତି କିଞ୍ଚନ ।''

ଅର୍ଥାତ୍ ଏହି ଦୃଶ୍ୟମାନ ସମସ୍ତ ଜଗତ୍ ପରମାତ୍ମାଠାରୁ ଭିନ୍ନ ନୁହେଁ ସେହି ସ୍ୱରୂପ ହିଁ ଅଟେ । ଏଣୁ ପରଂବ୍ରହ୍ମରେ ହିଁ ଦୁଇ ପ୍ରକାର ସ୍ୱରୂପଯୁକ୍ତ ଅଟେ ।

**ପ୍ରଧାନଂ ପୁରୁଷଂ ବୁଦ୍ଧା କାରଣଂ ବ୍ରହ୍ମବାଦିନଃ ।**
**ତେ ନାୟଂ ସଙ୍ଗତଃ ସ୍ୱାତ୍ମା କୂଟସ୍ଥୋଽପି ନିରଞ୍ଜନଃ ॥୧୯**
**ସ୍ୱାତ୍ମାନମକ୍ଷରଂ ବ୍ରହ୍ମ ନାବବୁଦ୍ଧ୍ୟେତ ତତ୍ତ୍ୱତଃ ।**
**ଅନାତ୍ମନ୍ୟାତ୍ମବିଜ୍ଞାନଂ ତସ୍ମାଦ୍ଦୁଃଖଂ ତଥେତରତ୍ ॥୨୦**
**ରାଗଦ୍ୱେଷାଦୟୋ ଦୋଷାଃ ସର୍ବେ ଭ୍ରାନ୍ତିନିବନ୍ଧନାଃ ।**
**କର୍ମଣ୍ୟସ୍ୟ ମହାନ୍ ଦୋଷଃ ପୁଣ୍ୟାପୁଣ୍ୟମିତି ସ୍ଥିତିଃ ॥୨୧**

ବ୍ରହ୍ମବାଦୀଗଣ ଜଗତ୍ର କାରଣ ପ୍ରକୃତି ତଥା ପୁରୁଷଙ୍କୁ କହିଛନ୍ତି । ଏହାଙ୍କ ସହ ସମ୍ବନ୍ଧରେ କୂଟସ୍ଥ (ନିର୍ବିକାର) ନିରଞ୍ଜନ ହୋଇ ମଧ୍ୟ ଆତ୍ମା ସ୍ୱସ୍ୱରୂପକୁ ଯଥାର୍ଥ ଭାବରେ ଜାଣିପାରେ ନାହିଁ । ଫଳରେ ଅନାତ୍ମ ବସ୍ତୁରେ ଯେଉଁ ଆତ୍ମବିଜ୍ଞାନ ହୋଇଯାଏ । ଫଳରେ ସୁଖଦୁଃଖ ଆଦି ଅନୁଭବ ହୁଏ । ରାଗଦ୍ୱେଷାଦି ଯେଉଁସବୁ ଦୋଷ ଅଛି ସବୁ ଭ୍ରାନ୍ତି ଭାବରେ ଆତ୍ମାରେ ପ୍ରତୀତି ହୋଇଥାଏ । କର୍ମର ସମ୍ବନ୍ଧ ଯେତେବେଳେ ଆତ୍ମା ସହିତ ହୁଏ ତାହା ହିଁ ମହାନ୍ ଦୋଷ ଅଟେ । ଏହା ହିଁ ସମସ୍ତ ପାପପୁଣ୍ୟର କାରଣ ହୋଇଥାଏ।

**ତଦ୍‌ବଶାଦେବ ସର୍ବେଷାଂ ସର୍ବଂ ଦେହସମୁଦ୍ଭବଃ ।**
**ନିତ୍ୟଂ ସର୍ବତ୍ର ଗୁହ୍ୟାତ୍ମା କୂଟସ୍ଥୋ ଦୋଷବର୍ଜିତଃ ॥୨୨**
**ଏକଃ ସନ୍ତିଷ୍ଠତେ ଶକ୍ତ୍ୟା ମାୟୟା ନ ସ୍ୱଭାବତଃ ।**
**ତସ୍ମାଦଦ୍ୱୈତମେବାହୁର୍ମୁନୟଃ ପରମାର୍ଥତଃ ॥୨୩**

ପୂର୍ବରୁ କୁହାଯାଇଛି ଯେ ପୁଣ୍ୟ, ପାପର ସମ୍ବନ୍ଧରୁ ସମସ୍ତ ପ୍ରାଣୀଙ୍କ ଶରୀରର ଉତ୍ପତ୍ତି ହୋଇଥାଏ । କିନ୍ତୁ ଆତ୍ମା ନିତ୍ୟ, ସର୍ବବ୍ୟାପକ ହୋଇଥିବାରୁ ସର୍ବତ୍ର ଅବସ୍ଥିତ ଅଟେ । କୂଟସ୍ଥ ଅର୍ଥାତ୍ ପର୍ବତର ଶିଖର ପରି ଅଚଳ ଓ ଦୋଷଶୂନ୍ୟ ଅଟେ । ଅର୍ଥାତ୍ ମାୟାଶକ୍ତି ସମସ୍ତ ଜଗତ ସୃଷ୍ଟି କରି ନାନା ପ୍ରକାରର ଭେଦ ଜନିତ ବ୍ୟବହାରର ନିୟାମକ ହୋଇଥାନ୍ତି । ସ୍ୱଭାବତଃ ଏହା ଆତ୍ମତତ୍ତ୍ୱରେ ଦେଖାଯାଏ

ନାହିଁ । ଏଣୁ ମୁନିଗଣ ପରମାର୍ଥ ଅବସ୍ଥାରେ ଅଦ୍ୱୈତ ହିଁ କହିଥାନ୍ତି, କାରଣ ଦ୍ୱୈତର ସ୍ଥିତି କାଳ୍ପନିକ ଅଟେ ।

**ଭେଦୋଽବ୍ୟକ୍ତସ୍ୱଭାବେନ ସା ଚ ମାୟାତ୍ମସଂଶୟା ।**
**ଯଥା ଚ ଧୂମସମ୍ପର୍କାନ୍ନାକାଶୋ ମଳିନୋ ଭବେତ୍ ॥୨୪**
**ଅନ୍ତଃକରଣଜୈର୍ଭାବୈରାତ୍ମା ତଦ୍ୱନ୍ନ ଲିପ୍ୟତେ ।**
**ଯଥା ସ୍ୱପ୍ରଭୟା ଭାତି କେବଳଃ ସ୍ଫଟିକୋପଳଃ ॥୨୫**
**ଉପାଧିହୀନୋ ବିମଳସ୍ତଥୈବାତ୍ମା ପ୍ରକାଶତେ ।**
**ଜ୍ଞାନସ୍ୱରୂପମେବାହୁର୍ଜଗଦେତଦ୍ୱିଚକ୍ଷଣାଃ ॥୨୬**

ନାମରୂପାତ୍ମକ ଯେଉଁ ଭେଦ ଜଗତରେ ପ୍ରତୀତି ହୋଇଥାଏ, ଏହାର ଉତ୍ପତ୍ତି ଅବ୍ୟକ୍ତ ପାଖରୁ ହୋଇଥାଏ । ଏହି ଅବ୍ୟକ୍ତ ହିଁ ମାୟା ଅଟେ । ଏହି ମାୟା ଆତ୍ମାର ଅଧୀନ ଅଟେ । ବେଦରେ ମଧ୍ୟ ଏହା କୁହାଯାଇଛି -

ମାୟାଂ ତୁ ପ୍ରକୃତିଂ ବିଦ୍ୟାନ୍ମାୟିନଂ ତୁ ମହେଶ୍ୱରମ୍ ।
ତସ୍ୟାବୟବଭୂତୈସ୍ତୁ ବ୍ୟାପ୍ତଂ ସର୍ବମିଦଂ ଜଗତ୍ ॥ (ଶ୍ୱେ.ଉ. ୪/୧୦)

ମୂଳ ପ୍ରକୃତିପ୍ରଧାନ ବା ଅବ୍ୟକ୍ତ ମାୟା - ଏ ସମସ୍ତ ଜଗତର କାରଣ ଅଟେ ଓ ମହେଶ୍ୱର ଆତ୍ମା ହିଁ ମାୟାର ସ୍ୱାମୀ ଅଟେ । ପରନ୍ତୁ ମାୟା ନିଜ ତିନି ଗୁଣଦ୍ୱାରା ଆତ୍ମାର ସ୍ୱରୂପରେ କୌଣସି ପ୍ରକାରର ବିକାର ଉତ୍ପନ୍ନ ହୁଏ ନାହିଁ। ଯେପରି ଆକାଶ ଧୂଆଁ ସମ୍ପର୍କରେ ଆସିଲେ ମଧ୍ୟ ମଳିନ ହୁଏ ନାହିଁ । ସେହିପରି ଅନ୍ତଃକରଣର ଭାବରେ ଆତ୍ମା ନିର୍ଲେପ ଅଟେ । ଯେପରି ସ୍ଫଟିକମଣି ଉପାଧି ସମ୍ବନ୍ଧରେ ନ ରହିଲେ ଶୁଦ୍ଧ କେବଳ ନିଜ ପ୍ରଭାରେ ଭାସିତ ହୋଇଥାଏ । ସେହିପରି ଅନେକ ଉପାଧିଶୂନ୍ୟ ଆତ୍ମା ମଧ୍ୟ ନିଜ ସ୍ୱରୂପରେ ଆପେ ଆପେ ପ୍ରକାଶିତ ହୋଇଥାଏ । ଯେପରି ସ୍ଫଟିକମଣି ପାଖରେ ଲାଲ ରଙ୍ଗର ଫୁଲ ରହିଲେ ଫୁଲ ସମ୍ପର୍କରେ ଆସି ସ୍ଫଟିକ ଧଳା ହୋଇଥିଲେ ମଧ୍ୟ ଲାଲ ରଙ୍ଗର ଫୁଲ ପ୍ରଭାବରେ ଲାଲରଙ୍ଗ ଦେଖାଯାଏ । ବାସ୍ତବରେ ଲାଲ ରଙ୍ଗ ସହ ସ୍ଫଟିକର କୌଣସି ସମ୍ବନ୍ଧ ନାହିଁ। ସେହିପରି ଆତ୍ମତତ୍ତ୍ୱରେ ମଧ୍ୟ ସୁଖଦୁଃଖର କୌଣସି ସମ୍ବନ୍ଧ ନାହିଁ । ମାତ୍ର ଅଜ୍ଞାନ ସମ୍ବନ୍ଧରେ ଆସି ଆତ୍ମା ନିଜକୁ ସୁଖୀଦୁଃଖୀ ମନେ କରେ । ସେହିପରି କେହି କେହି କେବଳ ତାର୍କିକ ଏପରି ପ୍ରଶ୍ନ କରନ୍ତି କି ଆତ୍ମା ସର୍ବଜ୍ଞ ଅଟେ । ଏହାର ବୁଦ୍ଧି ବା ଅନ୍ତଃକରଣ ସମ୍ବନ୍ଧରେ ଆସି ଅଳ୍ପଜ୍ଞ ହୋଇଥାଏ । ଏଣୁ ଜୀବକୁ ସର୍ବଦା ଆତ୍ମାଠାରୁ ଭିନ୍ନ ମନେକରିବା ଉଚିତ୍ ନୁହେଁ । ପରନ୍ତୁ ଏହି ସିଦ୍ଧାନ୍ତ ଅବୈଦିକ

ତଥା ଅଯୁକ୍ତିକର ମଧ୍ୟ ଅଟେ । କାରଣ ଅନ୍ୟର ଧର୍ମରେ କେହି ଧର୍ମୀ ହୋଇ ନଥାଏ - ଏପରି କୌଣସି ଉଦାହରଣ ନାହିଁ। ଯେପରି ଅଗ୍ନି ଆକାଶରେ ଜଳିଲେ ସେଥିରେ ଦାହିକାଶକ୍ତି ଓ ପ୍ରକାଶ ଦୁଇ ବସ୍ତୁର ସମ୍ବନ୍ଧ ଥାଏ, ମାତ୍ର ଆକାଶରେ ଜଳିବା ଓ ପ୍ରକାଶିତ କରିବା ଧର୍ମ ନଥାଏ । ସେହିପରି ଆତ୍ମାର ବୁଦ୍ଧି ସହ ସମ୍ବନ୍ଧ ଥିଲେ ମଧ୍ୟ ବାସ୍ତବିକ ହୋଇ ନଥିବାରୁ ଏହା ଆତ୍ମାର କିଛି ପରିବର୍ତ୍ତନ କରିପାରେ ନାହିଁ । ଏହା କେବଳ ଦୋଷ ରୂପରେ ମାନିବାକୁ ପଡେ । ଏଣୁ ବିଦ୍ୱାନ୍ ଲୋକ ଏହି ଜଗତକୁ ପରମାର୍ଥରେ ଜ୍ଞାନର ସ୍ୱରୂପ ବୋଲି କହିଥାନ୍ତି । କାରଣ ଆତ୍ମା ହିଁ ଜଗତ ରୂପର ଅଭେଦ ଅଟେ, ଏହା ହିଁ ସବୁଠାରୁ ପ୍ରଧାନ ଅଟେ ।

**ଅର୍ଥସ୍ୱରୂପମେବାନ୍ୟେ ପଶ୍ୟନ୍ତ୍ୟନ୍ୟେ କୁଦୃଷ୍ଟୟଃ ।**
**କୂଟସ୍ଥୋ ନିର୍ଗୁଣୋ ବ୍ୟାପୀ ଚୈତନ୍ୟାତ୍ମା ସ୍ୱଭାବତଃ ॥୨୭**
**ଦୃଶ୍ୟତେ ହ୍ୟର୍ଥରୂପେଣ ପୁରୁଷୈର୍ଜ୍ଞାନଦୃଷ୍ଟିଭିଃ ।**
**ଯଥା ଚ ଲକ୍ଷ୍ୟତେ ରକ୍ତଃ କେବଳଂ ସ୍ଫଟିକୋ ଜନୈଃ ॥୨୮**
**ରକ୍ତିକାଦ୍ୟୁପଧାନେନ ତଦ୍‌ବତ୍ପରମପୁରୁଷଃ ।**
**ତସ୍ମାଦାତ୍ମାକ୍ଷରଃ ଶୁଦ୍ଧୋ ନିତ୍ୟଃ ସର୍ବତ୍ରଗୋଽବ୍ୟୟଃ ॥୨୯**

ବୈଦିକ ଜ୍ଞାନବିହୀନ ବ୍ୟକ୍ତି ଯିଏ କି ନାନା ପ୍ରକାରର କୁବିଚାରକୁ ବିଶ୍ୱାସ କରିଥାନ୍ତି, ସେମାନେ ଏହି ଜଗତକୁ ବ୍ରହ୍ମଠାରୁ ପୃଥକ୍ ଅର୍ଥ ସ୍ୱରୂପ ବୋଲି କହିଥାନ୍ତି । ଯେଉଁ ଜ୍ଞାନୀଲୋକ ଯାହାଙ୍କ ବୁଦ୍ଧି ପକ୍ଷପାତଶୂନ୍ୟ ଅଟେ ସେ କେବଳ ପରମାତ୍ମାକୁ କୂଟସ୍ଥ ନିର୍ଗୁଣ, ବ୍ୟାପକ, ସ୍ୱଭାବଯୁକ୍ତ, ଚୈତନ୍ୟସ୍ୱରୂପ ତଥା ଅର୍ଥ ରୂପରେ ଦେଖିଥାନ୍ତି । ଯେପରି ସ୍ଫଟିକମଣି ରକ୍ତ ଆଦି ରଙ୍ଗର ସାହଚର୍ଯ୍ୟରେ ସମସ୍ତଙ୍କୁ ରକ୍ତ ରଙ୍ଗ ପରି ଦେଖାଯାଇଥାଏ, ସହିପରି ପରମପୁରୁଷ ପରମାତ୍ମା ମଧ୍ୟ ଜଗତ୍ ସ୍ୱରୂପ ବୋଲି ପ୍ରତୀତ ହୋଇଥାଏ । ବାସ୍ତବରେ ଆତ୍ମା ଶୁଦ୍ଧ ଅଟେ । ତେଣୁ ଆତ୍ମା ଅକ୍ଷର, ଶୁଦ୍ଧ, ନିତ୍ୟ, ସର୍ବବ୍ୟାପୀ ଓ ବିକାରଶୂନ୍ୟ ଅଟେ ।

**ଉପାସିତବ୍ୟୋ ମନ୍ତବ୍ୟଃ ଶ୍ରୋତବ୍ୟଶ୍ଚ ମୁମୁକ୍ଷୁଭିଃ ।**
**ଯଦା ମନସି ଚୈତନ୍ୟଂ ଭାତି ସର୍ବତ୍ର ସର୍ବଦା ॥ ୩୦**
**ଯୋଗିନଃ ଶ୍ରଦ୍ଦଧାନସ୍ୟ ତଦା ସମ୍ପଦ୍ୟତେ ସ୍ୱୟମ୍ ।**
**ଯଦା ସର୍ବାଣି ଭୂତାନି ସ୍ୱାତ୍ମନ୍ୟେବାଭି ପଶ୍ୟତି ॥୩୧**
**ସର୍ବଭୂତେଷୁ ଚାତ୍ମାନଂ ବ୍ରହ୍ମ ସମ୍ପଦ୍ୟତେ ତଦା ।**
**ଯଦା ସର୍ବାଣି ଭୂତାନି ସମାଧିସ୍ଥୋ ନ ପଶ୍ୟତି ॥ ୩୨**

ପୂର୍ବୋକ୍ତ ଲକ୍ଷଣ ଲକ୍ଷିତ ଆତ୍ମାକୁ ମୁକ୍ତିର ଇଚ୍ଛା ରଖିଥିବା ପୁରୁଷଙ୍କୁ ଆବଶ୍ୟକ ତତ୍ତ୍ୱଜ୍ଞ ଗୁରୁ ମୁଖରୁ ତତ୍ତ୍ୱ ଶ୍ରବଣ କରୁ । ତତ୍ତ୍ୱ ଶ୍ରବଣ କରିବା ପରେ ତର୍କର ସହାୟତାରେ ସେହି ତତ୍ତ୍ୱକୁ ମନନ କରିବା । ତା ପରେ ପରେ ନିଦିଧ୍ୟାସନ ରୂପ ସେହି ତତ୍ତ୍ୱର ଉପାସନା କରିବା । ଏହି ଭାବକୁ ବେଦରେ ମଧ ବର୍ଣ୍ଣନା କରାଯାଇଛି । ''ଆତ୍ମା ବାଽରେ ଦ୍ରଷ୍ଟବ୍ୟ ଶ୍ରୋତବ୍ୟୋ ମନ୍ତବ୍ୟୋ ନିଦିଧ୍ୟାସିତବ୍ୟଃ'' (ବୃ.ଉ. ୬/୫/୬) । ଅର୍ଥାତ୍ ଆତ୍ମତତ୍ତ୍ୱର ସାକ୍ଷାତ୍ ଶ୍ରବଣ, ମନନ, ନିଦିଧ୍ୟାସନ କରିବା ଉଚିତ୍ । ସେହିପରି ଅଭ୍ୟାସଦ୍ୱାରା ଜ୍ଞାନରେ ଦୃଢତା ହୋଇଗଲା ପରେ ଯେତେବେଳେ ଅନ୍ତଃକରଣରେ ସର୍ବତ୍ର ସର୍ବଦା ଚୈତନ୍ୟର ପ୍ରକାଶ ଦୃଷ୍ଟିଗୋଚର ହେବାକୁ ଲାଗିବ, ସେତେବେଳେ ଶ୍ରଦ୍ଧାଳୁ ଯୋଗିପୁରୁଷ ଯେତେବେଳେ ସ୍ୱୟଂ ସମସ୍ତ ଜ୍ଞାନ ଅଧିକାରୀ ହୋଇଯିବ । ଯେତେବେଳେ ସମସ୍ତ ପ୍ରାଣୀ ମଧ୍ୟରେ ବ୍ରହ୍ମକୁ ଦେଖିଥାଏ, ସେତେବେଳେ ବ୍ରହ୍ମଭାବକୁ ପ୍ରାପ୍ତ ହୋଇଥାଏ ।

**ଏକୀଭୂତଃ ପରେଣାସୌ ତଦା ଭବତି କେବଳମ୍ ।**
**ଯଦା ସର୍ବେ ପ୍ରମୁଚ୍ୟନ୍ତେ କାମାୟେଽସ୍ୟ ହୃଦି ସ୍ଥିତାଃ ॥୩୩**
**ତଦା ସାବମୃତୀଭୂତଃ କ୍ଷେମଂ ଗଚ୍ଛତି ପଣ୍ଡିତଃ ।**
**ଯଦା ଭୂତଃ ପୃଥଗ୍‌ଭାବମେକସ୍ଥମନୁପଶ୍ୟତି ॥୩୪**
**ତତ ଏବ ଚ ବିସ୍ତାରଂ ବ୍ରହ୍ମ ସମ୍ପଦ୍ୟତେ ସଦା ।**
**ଯଦା ପଶ୍ୟତି ଚାତ୍ମାନଂ କେବଳଂ ପରମାର୍ଥତଃ ॥୩୫**
**ମାୟାମାତ୍ରଂ ତଦା ସର୍ବଂ ଜଗଭବତି ନିବୃତ୍ତଃ ॥୩୬**
**ଯଦା ଜନ୍ମଜରାଦୁଃଖବ୍ୟାଧିନାମେକ ଭେଷଜମ୍ ।**
**କେବଳଂ ବ୍ରହ୍ମବିଜ୍ଞାନଂ ଜାୟତେଽସୌ ତଦା ଶିବ ॥୩୭**

ଯେତେବେଳେ ଯୋଗୀ ସମାଧିସ୍ଥ ହୋଇ ପରଂବ୍ରହ୍ମରେ ଏକତ୍ୱ ପ୍ରାପ୍ତ କରି ସମସ୍ତ ଭୂତକୁ ଦେଖି ନଥାଏ, ସେତେବେଳେ ସେ କେବଳମାତ୍ରକୁ ପ୍ରାପ୍ତ ହୋଇଥାଏ । ଯେତେବେଳେ ଯୋଗିର ହୃଦୟରେ ସଞ୍ଚିତ କାମନାଗୁଡ଼ିକ ତ୍ୟାଗ ହୋଇଯାଇଥାଏ, ସେତେବେଳେ ସେ ଅମୃତଭାବକୁ ପ୍ରାପ୍ତ ହୋଇ ବିଜ୍ଞାନ ଆନନ୍ଦକୁ ପ୍ରାପ୍ତ ହୋଇଥାଏ । ଯେତେବେଳେ ନାନାତ୍ୱମୟ ଭୂତ ସ୍ଥିତିକୁ ଏକ ଏକ ଆତ୍ମାଠାରୁ ଅଭିନ୍ନ ରୂପରେ ଦେଖିଥାଏ ତଥା ସେହି ଆତ୍ମାରେ ସମସ୍ତ ଜଗତର ବିସ୍ତାରକୁ ଜାଣିଥାଏ , ସେତେବେଳେ ଯୋଗୀ ବ୍ରହ୍ମଭାବକୁ ପ୍ରାପ୍ତ ହୋଇଥାଏ । ଯେତେବେଳେ ପରମାର୍ଥତଃ ଆତ୍ମାକୁ କେବଳ ରୂପରେ ସାକ୍ଷାତ୍ କରିଥାଏ, ସେତେବେଳେ ସମସ୍ତ

ଜଗତ୍ ମାୟାମାତ୍ର ପ୍ରତୀତି ହେବାରେ ଲାଗେ । ଯେତେବେଳେ ଜନ୍ମ, ଜରା, ବ୍ୟାଧି ଆଦି ଦୁଃଖର ଏକ ଔଷଧ ବ୍ରହ୍ମଜ୍ଞାନ ପ୍ରାପ୍ତ ହୋଇଗଲେ, ସେତେବେଳେ ଜୀବ ସ୍ୱୟଂ ଶିବସ୍ୱରୂପ ହୋଇଯାଇଥାଏ । ଏହି ଶ୍ଳୋକରେ କୁହାଯାଇଥିବା ଭାବକୁ ଉପନିଷଦରେ ମଧ୍ୟ ଏହିପ୍ରକାର ସ୍ୱୀକାର କରାଯାଇଛି ।

ଭିଦ୍ୟତେ ହୃଦୟଗ୍ରନ୍ଥି ଛିଦ୍ୟନ୍ତେ ସର୍ବସଂଶୟାଃ ।
କ୍ଷୀୟନ୍ତେ ଚାସ୍ୟ କର୍ମାଣି ତସ୍ମିନ୍ ଦୃଷ୍ଟେ ପରାବରେ ॥ (ମୁ.ଉ. ୨/୨/୮)

ଆତ୍ମଜ୍ଞାନ ଉଦୟ ହେଲା ପରେ ହୃଦୟର ସମସ୍ତ ଗ୍ରନ୍ଥିଗୁଡ଼ିକ ଛିଣ୍ଡି ଯାଇଥାଏ ଓ ସମସ୍ତ ସଂଶୟ ନଷ୍ଟ ହୋଇଯାଇଥାଏ ତଥା ସମସ୍ତ କର୍ମର ଗ୍ରନ୍ଥିଗୁଡ଼ିକ ସବୁ ସମୟ ପାଇଁ ନିର୍ମଳ ହୋଇଯାଇଥାଏ ।

**ଯଥା ନଦୀ ନଦା ଲୋକେ ସାଗରେଣୈକତାଂ ଯଯୁଃ ।**
**ତଦ୍ୱଦାତ୍ମାକ୍ଷରେଣାସୌ ନିଷ୍କଳେ ନୈକତାଂ ବ୍ରଜେତ୍ ॥୩୮**
**ତସ୍ମାଦ୍ୱିଜ୍ଞାନମେବାସ୍ତି ନ ପ୍ରପଞ୍ଚୋ ନ ସଂସ୍ଥିତିଃ ।**
**ଅଜ୍ଞାନେନାବୃତଂ ଜ୍ଞାନଂ ତେନ ମୁହ୍ୟତି ଜନ୍ତବଃ ॥୩୯**

ଯେପରି ନଦ-ନଦୀ ଏଣେତେଣେ ନାନାପ୍ରକାରର ବକ୍ରଗତିରେ ପ୍ରବାହିତ ହୋଇ ଶେଷରେ ସମୁଦ୍ରରେ ମିଶି ଏକ ହୋଇ ଯାଆନ୍ତି, ସେହିପରି ଆତ୍ମା ଅକ୍ଷର, ନିଷ୍କଳ ବ୍ରହ୍ମ ସହିତ ଏକତା ପ୍ରାପ୍ତ ହୋଇଯାଇଥାଏ । ଏହି ବିଷୟରେ ଶ୍ରୁତି ପ୍ରମାଣ ଅଛି -

''ଯଥା ନଦ୍ୟଃ ସ୍ୟନ୍ଦମାନାଃ ସମୁଦ୍ରେଽସ୍ତଂ ଗଚ୍ଛନ୍ତି ନାମରୂପେ ବିହାୟ ।
ତଥା ବିଦ୍ୱାନ୍ ନାମରୂପାଦ୍ ବିମୁକ୍ତଃ ପରାତ୍ପରଂ ପୁରୁଷମୁପୈତି ଦିବ୍ୟମ୍ ॥''
(ମୁ.ଉ. ୩/୨/୮) ।

ଯେପରି ନଦୀମାନେ ନାମରୂପକୁ ଛାଡ଼ି ସମୁଦ୍ରରେ ଯାଇ ଏକତ୍ୱ ଭାବକୁ ପ୍ରାପ୍ତ ହୋଇଥାଏ, ସେହିପରି ନାମରୂପାତ୍ମକ ଭେଦରୁ ନିବୃତ୍ତ ହୋଇ ବିଦ୍ୱାନ୍ ପରାତ୍ପର ବ୍ରହ୍ମକୁ ପ୍ରାପ୍ତ ହୋଇଥାଏ । ଏଣୁ ପରମାର୍ଥରେ କେବଳ ବିଜ୍ଞାନ ହିଁ ଥାଏ । ସେଥିରେ ଶ୍ରେଷ୍ଠ ଓ ପ୍ରତ୍ୟକ୍ଷ ଦୃଶ୍ୟମାନ ପ୍ରପଞ୍ଚ ନଥାଏ । ଏହାର ସ୍ଥିତି ମଧ୍ୟ ନଥାଏ । ଲୋକରେ ଅଜ୍ଞାନଦ୍ୱାରା ଆବୃତ୍ତ ହୋଇ ବିଜ୍ଞାନ ସବୁଲୋକ ଜାଣନ୍ତି ନାହିଁ, ଏଣୁ ମୋହକୁ ପ୍ରାପ୍ତ ହୋଇଥାଆନ୍ତି ।

**ବିଜ୍ଞାନଂ ନିର୍ମଳଂ ସୂକ୍ଷ୍ମଂ ନିର୍ବିକଳ୍ପଂ ତଦବ୍ୟୟମ୍ ।**
**ଅଜ୍ଞାନମିତରତ୍ସର୍ବଂ ବିଜ୍ଞାନମିତି ତନ୍ମତମ୍ ॥୪୦**

ଏତଦ୍ୱା କଥିତଂ ସାଂଖ୍ୟଂ ଭାଷିତଂ ଜ୍ଞାନମୁତ୍ତମମ୍ ।
ସର୍ବବେଦାନ୍ତସାରଂ ହି ଯୋଗସ୍ତତ୍ରୈକଚିତ୍ତତା ॥୪୧
ଯୋଗାତ୍ସଞ୍ଜାୟତେ ଜ୍ଞାନଂ ଜ୍ଞାନାଦ୍ୟୋଗଃ ପ୍ରବର୍ତ୍ତତେ ।
ଯୋଗଜ୍ଞାନାଭିଯୁକ୍ତସ୍ୟ ନାବାପ୍ୟଂ ବିଦ୍ୟତେ କ୍ୱଚିତ୍ ॥୪୨

ବିଜ୍ଞାନ ବସ୍ତୁ ନିର୍ମଳ, ସୂକ୍ଷ୍ମ, ନିର୍ବିକଳ୍ପ ଏବଂ ବିକାରଶୂନ୍ୟ ଅଟେ । ଏହାଠାରୁ ଭିନ୍ନ ସମସ୍ତ ଅଜ୍ଞାନ ଅଟେ । ଏହା ସୂଚିତ କଲା ପରେ ଶ୍ରୀକୈଳାସନାଥ ସମସ୍ତ ମୁନିମାନଙ୍କୁ ସମ୍ବୋଧନ କରି କହିଲେ- ହେ ମୁନିଗଣ ! ଏହି ଯେଉଁ ଜ୍ଞାନ ମୁଁ ଆପଣଙ୍କୁ ଶୁଣାଇଲି ଏହାକୁ ସାଂଖ୍ୟ କୁହାଯାଏ ଏବଂ ସମସ୍ତ ବିଜ୍ଞାନମାନଙ୍କ ମଧ୍ୟରେ ଉତ୍ତମ ଜ୍ଞାନ ଅଟେ। ଏହିସବୁ ତତ୍ତ୍ୱ ସମସ୍ତ ବେଦାନ୍ତର ସାର ଅଟେ। ବିଜ୍ଞାନରେ ଏକଚିତ୍ତତା ପ୍ରାପ୍ତ କରିବା ଯୋଗ କୁହାଯାଏ । ଯୋଗାଭ୍ୟାସରୁ ଜ୍ଞାନପୁଷ୍ଟତାକୁ ପ୍ରାପ୍ତ ହୋଇଥାଏ ତଥା ସଦ୍‌ଜ୍ଞାନକୁ ପ୍ରାପ୍ତ ହୋଇ ମନୁଷ୍ୟ ଯୋଗରେ ପ୍ରବୃତ୍ତି ହୋଇଥାଏ । ଯୋଗ ତଥା ଜ୍ଞାନକୁ ସମ୍ମିଳିତ ହେବା ପରେ ମନୁଷ୍ୟଙ୍କୁ କୌଣସି ବସ୍ତୁ ଦୁଷ୍ପ୍ରାପ୍ୟ ହୋଇ ନଥାଏ ।

ଯ ଦେବଃ ଯୋଗିନୋ ଯାନ୍ତି ସାଂଖ୍ୟୈସ୍ତଦତିଗମ୍ୟତେ ।
ଏକଂ ସାଂଖ୍ୟଞ୍ଚ ଯୋଗଞ୍ଚ ଯଃ ପଶ୍ୟତି ସ ତତ୍ତ୍ୱବିତ୍ ॥୪୩
ଅନ୍ୟେ ହି ଯୋଗିନୋ ବିପ୍ରା ହ୍ୟୈଶ୍ୱର୍ଯ୍ୟାସକ୍ତଚେତସଃ ।
ମଜ୍ଜନ୍ତି ତତ୍ର ତତ୍ରୈବ ଯେ ଚାନ୍ୟେ କୁଣ୍ଠବୁଦ୍ଧୟଃ ॥୪୪
ଯତ୍ତତ୍ସର୍ବମତଂ ଦିବ୍ୟମୈଶ୍ୱର୍ଯ୍ୟମମଳଂ ମହତ୍ ।
ଜ୍ଞାନଯୋଗାଭିଯୁକ୍ତସ୍ତୁ ଦେହାନ୍ତେ ତଦବାପ୍ନୁୟାତ୍ ॥୪୫

ଯେଉଁ ସ୍ଥଳ ଯୋଗିମାନଙ୍କଦ୍ୱାରା ପ୍ରାପ୍ତ ହୋଇଥାଏ, ସେହି ସ୍ଥାନ ସାଂଖ୍ୟବାଦୀ ଜ୍ଞାନୀମାନଙ୍କର ସ୍ଥଳ ଅଟେ, ଅର୍ଥାତ୍ ସେହି ସ୍ଥଳ ବ୍ରହ୍ମବାଦୀଙ୍କୁ ମଧ୍ୟ ମିଳିଥାଏ । କାରଣ ସାଂଖ୍ୟ ଏବଂ ବେଦାନ୍ତ ମଧ୍ୟରେ ସମାନ ରୂପରେ ଏକତା ରହିଛି । ଯିଏ ଯୋଗ ଏବଂ ସାଂଖ୍ୟକୁ ଅଭିନ୍ନ ରୂପରେ ଦେଖିଥାଏ ସେ ହିଁ ତତ୍ତ୍ୱବେତ୍ତା ଅଟେ । ହେ ବ୍ରାହ୍ମଣ ! ନିଷ୍କାମକର୍ମ ଯୋଗୀମାନଙ୍କଠାରୁ ଭିନ୍ନ ଯେଉଁ ଯୋଗୀ ବିଭିନ୍ନ ସିଦ୍ଧିକୁ ଇଚ୍ଛା କରିଥାଏ, ଯାହାର ଚିତ୍ତ ନାନା ପ୍ରକାର ଐଶ୍ୱର୍ଯ୍ୟରେ ଆସକ୍ତ ଥାଏ, ସେ କୁଣ୍ଠିତ ବୁଦ୍ଧିଯୁକ୍ତ ହୋଇ ଜନନ-ମରଣ ରୂପ ସଂସାରରେ ଲିପ୍ତ ହୋଇଥାଏ ଏବଂ ଏହାଠାରୁ ବିନ୍ନ ସର୍ବସମ୍ମତ ଦିବ୍ୟ, ନିର୍ମଳ, ମହାନ୍, ଐଶ୍ୱର୍ଯ୍ୟ ଯାହା ବେଦରେ ପ୍ରତିପାଦିତ ହୋଇଛି । ତାଙ୍କୁ ବ୍ରହ୍ମଜ୍ଞାନ ଏବଂ ନିଷ୍କାମ କର୍ମଯୋଗ

ତଥା ସମାଧିଯୋଗରେ ଶରୀର ଅନ୍ତରେ ମନୁଷ୍ୟ ପ୍ରାପ୍ତ କରିଥାଏ ।

**ଏଷ ଆତ୍ମାହମବ୍ୟକ୍ତୋ ମାୟାବୀ ପରମେଶ୍ୱରଃ ।**
**କୀର୍ତ୍ତିତଃ ସର୍ବବେଦେଷୁ ସର୍ବାତ୍ମା ସର୍ବତୋମୁଖଃ ।।୪୬**
**ସର୍ବରୂପଃ ସର୍ବରସଃ ସର୍ବଗନ୍ଧୋଽଜରୋଽମରଃ ।**
**ସର୍ବତଃ ପାଣିପାଦୋଽହମନ୍ତର୍ଯ୍ୟାମୀ ସନାତନଃ ।।୪୭**
**ଅପାଣିପାଦୋ ଜବନୋ ଗ୍ରହୀତା ହୃଦି ସଂସ୍ଥିତଃ ।**
**ଅଚକ୍ଷୁରପି ପଶ୍ୟାମି ତଥା ଅକର୍ଣ୍ଣଃ ଶୃଣୋମ୍ୟହମ୍ ।।୪୮**

ଅହଂ ପ୍ରତ୍ୟୟ ଆଶ୍ରୟ ଏହି ଆତ୍ମା ତଥା ପରମେଶ୍ୱର ରୂପରେ ସମସ୍ତ ବେଦରେ କୁହାଯାଇଛି । ଏହି ଆତ୍ମା ସର୍ବତୋମୁଖ ଅଟେ । ସମସ୍ତ ପଦାର୍ଥ ଏହାର ରୂପ ଅଟେ । ସର୍ବରସ, ସର୍ବଗନ୍ଧ, ଅଜର, ଅମର, ଚାରିଦିଗ ଏହାର ହାତପାଦାଦି ଅଟେ । ଅନ୍ତର୍ଯ୍ୟାମୀ, ସନାତନ ତଥା ହାତପାଦ ନ ଥାଇ ମଧ୍ୟ ତୀବ୍ର ଗତିଯୁକ୍ତ ହୋଇ ସମସ୍ତ ହୃଦୟରେ ପ୍ରବେଶ କରି ସତ୍ତାମାତ୍ରରେ ସ୍ଫୁରିତ ହୋଇଥାଏ । ବିନା ନେତ୍ରରେ ସମସ୍ତ ବସ୍ତୁକୁ ଦେଖିପାରେ ତଥା ବିନା କାନରେ ସେ ସମସ୍ତ କଥା ଶୁଣିପାରେ । ଏହା ଉପନିଷଦରେ ବର୍ଣ୍ଣନା କରାଯାଇଛି ''ଅପାଣିପାଦୋ ଜବନୋ ଗ୍ରହୀତା ପଶ୍ୟତ୍ୟଚକ୍ଷୁଃ ସ ଶୃଣୋତ୍ୟକର୍ଣ୍ଣଃ । ସ ବେତି ବେଦ୍ୟଂ ନ ଚ ତସ୍ୟାସ୍ତି ବେତ୍ତା ତମାହୁରଗ୍ର୍ୟଂ ପୁରୁଷଂ ମହାନ୍ତମ୍ ।।'' (ଶ୍ୱେ.ଉ. ୩/୧୯) ଅର୍ଥାତ୍ ଆତ୍ମା ବିନା ହାତ-ପାଦରେ ମଧ୍ୟ ସମସ୍ତ ବସ୍ତୁକୁ ଗ୍ରହଣ କରିପାରେ । ବିନା ନେତ୍ର କର୍ଣ୍ଣରେ ସମସ୍ତ ବସ୍ତୁ ଦେଖିପାରେ ଶୁଣିପାରେ । ଏହି ଆତ୍ମା ସମସ୍ତ ବସ୍ତୁର ବେତ୍ତା ଅଟେ । ଏହି ଆତ୍ମତତ୍ତ୍ୱବେତ୍ତା ଅନ୍ୟ କେହି ନୁହେଁ । ଏହାକୁ ସମସ୍ତ ଋଷିଗଣ ଶ୍ରେଷ୍ଠପୁରୁଷ ଓ ମହାନ୍ ଆତ୍ମା କହିଛନ୍ତି ।

**ବେଦାହଂ ସର୍ବମେବେଦଂ ନମାଂ ଜାନାତି କଶ୍ଚନ ।**
**ପ୍ରାହୁର୍ମହାନ୍ତଂ ପୁରୁଷଂ ମାମେକଂ ତତ୍ତ୍ୱଦର୍ଶିନଃ ।।୪୯**
**ପଶ୍ୟନ୍ତି ଋଷୟୋ ହେତୁମାତ୍ମନଃ ସୂକ୍ଷ୍ମଦର୍ଶିନଃ ।**
**ନିର୍ଗୁଣାମଳରୂପସ୍ୟ ଯଦୈଶ୍ୱର୍ଯ୍ୟ ମନୁତ୍ତମମ୍ ।।୫୦**

'ଶାସ୍ତ୍ରଦୃଷ୍ଟ୍ୟାତ୍ତୂପଦେଶୋ ବାମଦେବବତ୍' (ବେ.ସା. ୧/୧/୩୦) । ଏହି ସୂତ୍ର ଅନୁସାରେ ଶ୍ରୀଶଙ୍କର ଋଷିଗଣଙ୍କୁ ଉକ୍ତ ଉପଦେଶ ଦେଇଥିଲେ ଯେ, ହେ ମୁନିଗଣ ! ମୁଁ ସମସ୍ତ ବସ୍ତୁର ଜ୍ଞାତା ଅଟେ । ଆଉ ମୋର ଜ୍ଞାତା କେହି ନାହାଁନ୍ତି ଅର୍ଥାତ୍ ଆମର ଅନ୍ତ କେହି ଜାଣନ୍ତି ନାହିଁ । ତତ୍ତ୍ୱଦ୍ରଷ୍ଟାଗଣଙ୍କ ମତରେ ଏକ ମହାନ୍

ଏବଂ ପୁରୁଷ ରୂପରେ ପ୍ରତିପାଦନ କରାଯାଇଛି । ସୂକ୍ଷ୍ମଦ୍ରଷ୍ଟା ମୁନିଗଣ ମଧ୍ୟ ସବୁର କାରଣ ମତେ ହିଁ ବୁଝିଥାନ୍ତି । ଯେଉଁ ନିର୍ଗୁଣ ଅମଳ ରୂପ ଆତ୍ମାର ଐଶ୍ୱର୍ଯ୍ୟ ଅନୁତ୍ତମ ଅଟେ, ଏହା ସହ ସମତୁଲ ଅନ୍ୟ କୌଣସି ବସ୍ତୁ ନୁହେଁ ।

**ଯନ୍ନ ଦେବା ବିଜାନନ୍ତି ମୋହିତା ମମ ମାୟୟା ।**
**ବକ୍ଷ୍ୟେ ସମାହିତା ଯୂୟଂ ଶୃଣୁଧ୍ୱଂ ବ୍ରହ୍ମବାଦିନଃ ॥୫୧**
**ନାହଂ ପ୍ରଶସ୍ତଃ ସର୍ବସ୍ୟ ମାୟାତୀତଃ ସ୍ୱଭାବତଃ ।**
**ପ୍ରେରୟାମି ତଥାପୀଦଂ କାରଣଂ ସୂରୟୋ ବିଦୁଃ ॥୫୨**
**ଯନ୍ମେ ଗୁହ୍ୟତମଂ ଦେହଂ ସର୍ବଗଂ ତତ୍ତ୍ୱଦର୍ଶିନଃ ।**
**ପ୍ରବିଷ୍ଟା ମମ ସାଯୁଜ୍ୟଂ ଲଭନ୍ତେ ଯୋଗିନୋଽବ୍ୟୟମ୍ ॥୫୩**
**ଯେ ହି ମାୟାମତିକ୍ରାନ୍ତା ମମ ଯା ବିଶ୍ୱରୂପିଣୀମ୍ ।**
**ଲଭନ୍ତେ ପରମଂ ଶୁଦ୍ଧଂ ନିର୍ବାଣନ୍ତେ ମୟା ସହ ॥୫୪**

ହେ ବ୍ରହ୍ମବେତ୍ତା ମୁନିଗଣ ! ଯେଉଁ ଆତ୍ମାକୁ ଜାଣିବା ପାଇଁ ଆମର ମାୟାରେ ମୋହିତ ଦେବଗଣ ମଧ୍ୟ ସମର୍ଥ ନୁହଁନ୍ତି, ସେହି ଆତ୍ମତତ୍ତ୍ୱକୁ ମୁଁ ଆପଣ ସବୁ ମହାନୁଭବଙ୍କୁ କହୁଛି, ସମାହିତ ଚିତ୍ତରେ ଶ୍ରବଣ କର । ସ୍ୱଭାବତଃ ମୋର ସ୍ୱରୂପ ମାୟାଠାରୁ ଭିନ୍ନ ଅଟେ । ତେଣୁ ସର୍ବସାଧାରଣଙ୍କୁ ମୋର ସ୍ୱରୂପ ଦୁର୍ଗମ୍ୟ ଅଟେ । ତଥାପି ମୁଁ ଏହି ଜଗତର ପ୍ରେରକ ଅଟେ, ଏହା ସମସ୍ତ ବିଦ୍ୱାନ୍ ଲୋକ ଜାଣନ୍ତି । ମୋର ଗୁହ୍ୟସ୍ୱରୂପ ଯାହା ସର୍ବତ୍ର ବ୍ୟାପକ ଅଟେ । ସେଥିରେ ତତ୍ତ୍ୱଦର୍ଶୀ ଯୋଗିଗଣ ପ୍ରବେଶ କରି ଆମର ସାଯୁଜ୍ୟକୁ ପ୍ରାପ୍ତ ହୋଇଥାନ୍ତି । ଯିଏ ଆମର ବିଶ୍ୱମୋହିନୀ ମାୟାକୁ ଅତିକ୍ରମଣ କରିଥାଏ, ସେ ହିଁ ଶୁଦ୍ଧ ନିର୍ବାଣକୁ ପ୍ରାପ୍ତ କରିବାକୁ ସମର୍ଥ ହୋଇଥାଏ ।

**ନ ତେଷାଂ ପୁନରାବୃତିଃ କଳ୍ପକୋଟିଶତୈରପି ।**
**ପ୍ରସାଦାନ୍ମମ ଯୋଗୀନ୍ଦ୍ରା ଏତଦ୍ବେଦାନୁଶାସନମ୍ ॥୫୫**
**ତତ୍ପୁତ୍ର ଶିଷ୍ୟ ଯୋଗିଭ୍ୟୋ ଦାତବ୍ୟଂ ବ୍ରହ୍ମବାଦିଭିଃ ।**
**ମଦୁକ୍ତ ମେ ତଦ୍ଧି ଜ୍ଞାନଂ ସାଂଖ୍ୟଂ ଯୋଗ ସମାଶ୍ରୟମ୍ ॥୫୬**

ଏହିପରି ପୁରୁଷର କୋଟି କୋଟି କଳ୍ପରେ ମଧ୍ୟ ପୁନଃ ସଂସାରରେ ଆବୃତ୍ତି ହୋଇ ନଥାଏ । କାରଣ ଏହି ବିଷୟରେ ଆମର ପ୍ରସାଦ ଏହି ବ୍ୟକ୍ତି ଉପରେ ଥାଏ, ଏହା ବେଦର ଅନୁଶାସନ ଅଟେ ।

"ନ ଚ ପୁନରାବର୍ତ୍ତତେ, ନ ଚ ପୁନରାବର୍ତ୍ତତେ ।" (ଛା.ଉ. ୮/୧୪/୧)

ଏହା ପରମ ଗୁହ୍ୟଯୋଗଦ୍ୱାରା ଯୁକ୍ତ ସାଂଖ୍ୟ ଜ୍ଞାନର ନିରୂପଣ ମୁଁ ଆପଣ ସମସ୍ତଙ୍କୁ ଶୁଣାଇଲି ॥ ଏହାକୁ ଯୋଗ୍ୟ ପୁତ୍ର, ଶିଷ୍ୟ ତଥା ଯୋଗୀ ପୁରୁଷକୁ ହିଁ ଆପଣ ପ୍ରଦାନ କରିବେ, କାରଣ ଏହା ଅତ୍ୟନ୍ତ ରହସ୍ୟମୟ ଅଟେ ।

ଇତି ଶ୍ରୀକୂର୍ମପୁରାଣେ ଉତ୍ତରାର୍ଦ୍ଧେ ଈଶ୍ୱରଗୀତାସୁ ଉପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଋଷିବ୍ୟାସସଂବାଦେ ଦ୍ୱିତୀୟୋଽଧ୍ୟାୟଃ ।

*ଶ୍ରୀମଦ୍ଭଗବଦ୍‌ଗୀତାରେ ଯେପରି ଦ୍ୱିତୀୟ ଅଧ୍ୟାୟ ସାଂଖ୍ୟଯୋଗରେ ଆତ୍ମାର ସ୍ୱରୂପ ବର୍ଣ୍ଣନା କରି କରି ଭଗବାନ୍ ଶ୍ରୀକୃଷ୍ଣ ସ୍ଥିତପ୍ରଜ୍ଞର ଆଲୋଚନା କଲେ ତଥାପି ଶ୍ରୀମନ୍ ଅର୍ଜୁନ ତୃତୀୟ ଅଧ୍ୟାୟରେ ନୂତନ ଜିଜ୍ଞାସା କର୍ମବିଷୟକ ପ୍ରଶ୍ନ ପଚାରିବସିଲେ । ତେଣୁ ତୃତୀୟ ଅଧ୍ୟାୟରେ କର୍ମଯୋଗର ଆରମ୍ଭ ହେଲା ।*

*ଏହି ଈଶ୍ୱରଗୀତାରେ କିନ୍ତୁ ତତ୍ତ୍ୱ ଆଲୋଚନା ଅଧିକ ହୋଇଛି, ତଥାପି କର୍ମଯୋଗ ମଧ୍ୟ ବର୍ଣ୍ଣନା ହୋଇଛି । ମାତ୍ର ତତ୍ତ୍ୱଜ୍ଞାନର ମହତ୍ତ୍ୱ ଏହି ଗୀତାରେ ରହିଛି । ପ୍ରସଙ୍ଗକ୍ରମେ ଶ୍ୱେତାଶ୍ୱେତର ଉପନିଷଦର ବାଣୀ ଆଲୋଚନା ମଧ୍ୟ ଦେଖିବାକୁ ମିଳେ ଯଥା-*

*ଅପାଣିପାଦୋ ଜବନୋ ଗ୍ରହୀତା ହୃଦି ସଂସ୍ଥିତଃ ।*
*ଅଚକ୍ଷୁରପି ପଶ୍ୟାମି ତଥାଽକର୍ଣ୍ଣଃ ଶୃଣୋମ୍ୟହମ୍ ॥ (ଈଶ୍ୱରଗୀତା ୨/୪୮)*

---*---

# ତୃତୀୟ ଅଧ୍ୟାୟ

## ଆତ୍ମଯୋଗାଧ୍ୟାୟ

*(ଏହି ଅଧ୍ୟାୟରେ ବେଦାନ୍ତଶାସ୍ତ୍ର ପ୍ରତିପାଦିତ ତଥା ସାଂଖ୍ୟମତ ଅନୁସାରେ ଆତ୍ମାର ଶୁଦ୍ଧସ୍ୱରୂପ ବର୍ଣ୍ଣନା କରାଯାଇଛି । ଏଣୁ ଏହି ଅଧ୍ୟାୟକୁ ଆତ୍ମଯୋଗାଧ୍ୟାୟ ମଧ୍ୟ କୁହାଯାଇଛି ।)*

**ଅବ୍ୟକ୍ତାଭବତ୍କାଳଃ ପ୍ରଧାନଂ ପୁରୁଷଃ ପରଃ ।**
**ତେଭ୍ୟଃ ସର୍ବମିଦଂ ଜାତଂ ତସ୍ମଦ୍‌ବ୍ରହ୍ମମୟଂ ଜଗତ୍ ।।୧**
**ସର୍ବତଃ ପାଣିପାଦାନ୍ତଂ ସର୍ବତୋଽକ୍ଷି ଶିରୋମୁଖମ୍ ।**
**ସର୍ବତଃ ଶ୍ରୁତିମାଁଲ୍ଲୋକେ ସର୍ବମାବୃତ୍ୟ ତିଷ୍ଠତି ।।୨**

ଅବ୍ୟକ୍ତଠାରୁ ସର୍ବପ୍ରଥମେ କାଳ ଅଭିବ୍ୟକ୍ତ ହେଲା । ତା'ପରେ ପ୍ରଧାନ (ମାୟା) ତଥା ପୁରୁଷର ଆବିର୍ଭାବ ହେଲା । ତା'ପରେ ପରେ ସମସ୍ତ ବସ୍ତୁ ପ୍ରକାଶିତ ହେଲା । ପରଂବ୍ରହ୍ମଙ୍କଠାରୁ ସମସ୍ତ ପଦାର୍ଥ ଉତ୍ପନ୍ନ ହୋଇଥିବାରୁ ଏହି ଜଗତ ମଧ୍ୟ ବ୍ରହ୍ମମୟ ବୋଲି ବୁଝିବା ଉଚିତ୍ । ଏଣୁ ଯେତେ ହସ୍ତ, ପାଦ, ନେତ୍ର, କର୍ଣ୍ଣ, ମସ୍ତକ ଆଦି ବସ୍ତୁ ଜଗତରେ ଦେଖାଯାଉଛି ଏହିସବୁକୁ ବ୍ରହ୍ମ ଆବୃତ୍ତ କରି ପ୍ରକାଶିତ କରିଥାଏ । ଏହି ଭାବ ଶ୍ରୁତିରେ ଅଥବା ବେଦରେ ମଧ୍ୟ ବିଶଦ ଭାବରେ ବର୍ଣ୍ଣନା କରାଯାଇଛି । (ଶ୍ୱେତାଶ୍ୱତ ଉପନିଷଦର ତୃତୀୟ ଅଧ୍ୟାୟର ୧୬, ୧୭ ମନ୍ତ୍ରରେ ବର୍ଣ୍ଣନା ରହିଛି ।)

**ସର୍ବେନ୍ଦ୍ରିୟଗୁଣାଭାସଂ ସର୍ବେନ୍ଦ୍ରିୟବିବର୍ଜିତମ୍ ।**
**ସର୍ବାଧାରଂ ସଦାନନ୍ଦମବ୍ୟକ୍ତଂ ଦ୍ୱୈତବର୍ଜିତମ୍ ।।୩**
**ସର୍ବୋପମାନରହିତଂ ପ୍ରମାଣାତୀତଗୋଚରମ୍ ।**
**ନିର୍ବିକଳ୍ପଂ ନିରାଭାସଂ ସର୍ବାବାସଂ ପରାମୃତମ୍ ।।୪**
**ଅଭିନ୍ନଂ ଭିନ୍ନସଂସ୍ଥାନଂ ଶାଶ୍ୱତଂ ଧ୍ରୁବମବ୍ୟୟମ୍ ।**
**ନିର୍ଗୁଣଂ ପରମଂ ଜ୍ୟୋତିସ୍ତଜ୍ଜ୍ଞାନଂ ସୁରୟୋ ବିଦୁଃ ।।୫**

ସମସ୍ତ ଇନ୍ଦ୍ରିୟ ତଥା ଗୁଣର ପ୍ରକାଶକ ଆତ୍ମା ଅଟେ, ତଥା ସମସ୍ତ ଇନ୍ଦ୍ରିୟଠାରୁ ଭିନ୍ନ ଓ ସମସ୍ତ ବସ୍ତୁର ଅଧିଷ୍ଠାନ ସଦା ଆନନ୍ଦସ୍ୱରୂପ, ଅବ୍ୟକ୍ତ ତଥା ଦ୍ୱୈତଠାରୁ ଭିନ୍ନ ଅଟେ । ଏହାର କୌଣସି ଉପମା ନାହିଁ । ତେଣୁ କୌଣସି

ଲୌକିକ ପ୍ରମାଣଦ୍ୱାରା ଏହାକୁ ପ୍ରମାଣିତ କରିପାରିବ ନାହିଁ । ଶ୍ରୁତି ମଧ୍ୟ ଏହିପରି କହିଛି ଯେ- ''ସଦୈବ ସୋମ୍ୟେଦମଗ୍ରେ ଆସୀଦେକମେବାଦ୍ୱିତୀୟମ୍ ॥'' (ଛା.ଉ. ୬/୨/୯) । ଏହି ନାମରୂପାତ୍ମକ ଜଗତର ଉତ୍ପନ୍ନ ହେବା ପୂର୍ବରୁ କେବଳ ଏକ ଦ୍ୱୈତବର୍ଜିତ ଆତ୍ମତତ୍ତ୍ୱ ହିଁ ସତ୍ ରୂପରେ ଥିଲା । ଏଥିରୁ ଏହା ସିଦ୍ଧ ହେଲା ଯେ ଶ୍ରୌତସିଦ୍ଧାନ୍ତ ଅଦ୍ୱୈତ ହିଁ ଅଟେ । କେହି କେହି ଦ୍ୱୈତବାଦକୁ ବୈଦିକ ସିଦ୍ଧାନ୍ତ ବୋଲି କହିଥାନ୍ତି । ମାତ୍ର ତାହା ଅମୂଳକ ଅଟେ । ''ନ ତସ୍ୟ ପ୍ରତିମାଽସ୍ତି ଯସ୍ୟ ନାମ ମହଦ୍ୟଶଃ'' (ଯଜୁର୍ବେଦ ୩୨/୩) ଅର୍ଥାତ୍ ଏହି ମହାନ୍ ଯଶଯୁକ୍ତ ପରମାତ୍ମାର କୌଣସି ପ୍ରତିମା ନାହିଁ । ଏଠାରେ ପ୍ରତିମାର ଅର୍ଥ ଉପମା ଅଟେ । ଏଣୁ ଶ୍ଳୋକରେ କୁହାଯାଇଛି 'ସର୍ବୋପମାନରହିତ' ପଦ ଦିଆଯାଇଛି । କେହି କେହି ମୂର୍ତ୍ତିପୂଜନକୁ ନିଷେଧ କରୁଥିବା ସ୍ଥଳେ ଏହି ମନ୍ତ୍ରକୁ ଉଦାହରଣ ଦିଅନ୍ତି । ମାତ୍ର ଏହାର ଅର୍ଥ ସମ୍ପ୍ରଦାୟ ବିରୁଦ୍ଧ ଓ ଅପ୍ରାସଙ୍ଗିକ ଅଟେ । ପରମାତ୍ମାଙ୍କର ପ୍ରଧାନ ସ୍ୱରୂପ ନିର୍ବିକଳ୍ପ, ଅନ୍ୟ ପଦାର୍ଥର ଆଭାସଶୂନ୍ୟ, ପରମ ଅମୃତ ସ୍ୱରୂପ ତଥା ସର୍ବତ୍ର ବ୍ୟାପକ ରୂପରେ ରହିଥାନ୍ତି । ସମସ୍ତ ମଧ୍ୟରେ ଅଭିନ୍ନ ରହି ମଧ୍ୟ ଏହାକୁ ବିଦ୍ୱାନ୍ ଭିନ୍ନ ସ୍ଥିତିଯୁକ୍ତ ସନାତନ, ଅଚଳ, ଅବ୍ୟୟ ଜ୍ୟୋତିସ୍ୱରୂପାତ୍ମକ ବୋଲି କହିଛନ୍ତି ।

**ସ ଆତ୍ମା ସର୍ବଭୂତାନାଂ ସବାହ୍ୟାଭ୍ୟନ୍ତରଃ ପରଃ ।**
**ସୋଽହଂ ସର୍ବତ୍ରଗଃ ଶାନ୍ତୋ ଜ୍ଞାନାତ୍ମା ପରମେଶ୍ୱରଃ ॥୬**
**ମୟା ତତମିଦଂ ବିଶ୍ୱଂ ଜଗତ୍ ସ୍ଥାବରଜଙ୍ଗମମ୍ ।**
**ମତ୍ସ୍ଥାନି ସର୍ବଭୂତାନି ଯସ୍ତଂ ବେଦବିଦୋ ବିଦୁଃ ॥୭**

ସେହି ଆତ୍ମା ସମସ୍ତ ପ୍ରାଣୀଙ୍କର ଅନ୍ତରରେ ଓ ବାହାରେ ସର୍ବତ୍ର ସବୁଆଡେ ରହିଥାଏ । ସେହି ଆତ୍ମା ହିଁ ଅହଂ ପଦବାଚ୍ୟ ଅଟେ । ଶାନ୍ତ ଜ୍ଞାନସ୍ୱରୂପଯୁକ୍ତ ଏହାଙ୍କୁ ପରମେଶ୍ୱର ମଧ୍ୟ କୁହାଯାଏ । ଶ୍ରୀକୈଳାସନାଥ ମୁନିମାନଙ୍କୁ ସଂବୋଧନ କରି କହିଲେ ଯେ, ଯେଉଁସବୁ ସ୍ଥାବର ଜଙ୍ଗମ ସ୍ୱରୂପାତ୍ମକ ଜାଗତିକ ପଦାର୍ଥ ଅଟେ । ଏହିସବୁକୁ ମୁଁ ବ୍ୟାପ୍ତ କରି ରଖିଛି । ଯେତେ ସବୁ ଜାଗତିକ ପ୍ରାଣୀ ମୋ ମଧ୍ୟରେ ରହିଛନ୍ତି ତଥା ଏହାକୁ ଯିଏ ଏପରି ଭାବରେ ଜାଣିଥାଏ ତାହାକୁ ବେଦବେତ୍ତା କୁହାଯାଏ । ଏହାର ବିପରୀତ ଜ୍ଞାନକୁ କହୁଥିବା ପ୍ରାଣୀଙ୍କୁ ଅଜ୍ଞାନୀ କୁହାଯାଏ ।

**ପ୍ରଧାନଂ ପୁରୁଷଶ୍ଚୈବ ତଦ୍ୱସ୍ତୁ ସମୁଦାହୃତମ୍ ।**
**ତୟୋରନାଦିରୁଦ୍ଦିଷ୍ଟଃ କାଳଃ ସଂଯୋଗଜଃ ପରଃ ॥୮**

**ତ୍ରୟ ମେ ତଦନାଦ୍ୟନ୍ତମବ୍ୟକ୍ତେ ସମବସ୍ଥିତମ୍ ।**
**ତଦାତ୍ମକଂ ତଦନ୍ୟସ୍ୟାଉଦ୍ରୂପଂ ମାମକଂ ବିଦୁଃ ।।୯**
**ମହଦାଦ୍ୟଂ ବିଶେଷାନ୍ତଂ ସଂପ୍ରସୂତେଽଖିଳଂ ଜଗତ୍ ।**
**ଯା ସା ପ୍ରକୃତିରୁଦ୍ଦିଷ୍ଟା ମୋହନୀ ସର୍ବଦେହୀନାମ୍ ।।୧୦**

ପ୍ରକୃତି ଓ ପୁରୁଷ ଏହି ଦୁଇ ତତ୍ତ୍ୱର କାରଣ ହେତୁ ଜଗତର ଉତ୍ପତ୍ତି ହୋଇଥାଏ । ଏହି ଦୁଇ ପ୍ରକୃତି ଓ ପୁରୁଷ ରୂପ ତତ୍ତ୍ୱ ପଦାର୍ଥର ଅନାଦି ସଂଯୋଗରୁ କାଳ ନାମକ ପଦାର୍ଥର ଉତ୍ପତ୍ତି ହୋଇଥାଏ । ଏହି ତିନି ପଦାର୍ଥ ପ୍ରକୃତି, ପୁରୁଷ ଓ କାଳ ଆଦିଅନ୍ତଶୂନ୍ୟ ଭାବରେ ପରଂବ୍ରହ୍ମରେ ଥାଆନ୍ତି । ଏହି ବ୍ରହ୍ମସ୍ୱରୂପାତ୍ମକ କାର୍ଯ୍ୟାବସ୍ଥାରେ ଭିନ୍ନାକାର ଭାବରେ ପ୍ରତୀତି ହୋଇଥାଏ । ଏହାକୁ ବିଦ୍ୱାନ୍ ଲୋକ ମୋର ସ୍ୱରୂପ ବୋଲି ବୁଝନ୍ତି । ମହତତ୍ତ୍ୱଠାରୁ ଆରମ୍ଭ କରି ସ୍ଥୂଳ ଜଗତ ପର୍ଯ୍ୟନ୍ତ ଯାହା ଉତ୍ପନ୍ନ ହୋଇଥାଏ ତାହାକୁ ପ୍ରକୃତି କୁହାଯାଏ । ଯାହାକି ସମସ୍ତ ପ୍ରାଣୀଙ୍କୁ ମୋହିତ କରିଥାଏ ।

**ପୁରୁଷଃ ପ୍ରକୃତିସ୍ଥୋ ବୈ ଭୁଙ୍କ୍ତେ ଯଃ ପ୍ରକୃତାନ୍‌ଗୁଣାନ୍ ।**
**ଅହଙ୍କାରବିମୁକ୍ତତ୍ୱାତ୍ ପ୍ରୋଚ୍ୟତେ ପଞ୍ଚବିଂଶକଃ ।।୧୧**
**ଆଦ୍ୟୋ ବିକାରଃ ପ୍ରକୃତେର୍ମହାନିତି ଚ କଥ୍ୟତେ ।**
**ବିଜ୍ଞାତୃ ଶକ୍ତିବିଜ୍ଞାନାତ୍ ହ୍ୟହଙ୍କାରସ୍ତୁଦୁତ୍ଥିତଃ ।।୧୨**

ପ୍ରକୃତି ସମ୍ବନ୍ଧରେ ରହି ପୁରୁଷର ସତ୍ତ୍ୱ, ରଜ, ତମ ଆଦି ଗୁଣର କାର୍ଯ୍ୟକୁ ଉପଭୋଗ କରିଥାଏ । ଯେତେବେଳେ ଅହଙ୍କାରରୁ ମୁକ୍ତ ହୋଇଯାଏ ସେତେବେଳେ ଶୁଦ୍ଧ ସ୍ୱରୂପାତ୍ମକ ହୋଇଯାଏ । ଏହାକୁ ସାଂଖ୍ୟଶାସ୍ତ୍ରରେ ପ୍ରକୃତିର ୨୪ ପ୍ରକାରର ଭିନ୍ନ ୨୫ ତତ୍ତ୍ୱ ଗ୍ରହଣ କରାଯାଇଥାଏ । ପ୍ରକୃତିର ସର୍ବପ୍ରଥମ ବିକାର ମହତତ୍ତ୍ୱ କୁହାଯାଏ । ବିଜ୍ଞାତୃ ଶକ୍ତିଯୁକ୍ତ ବୁଦ୍ଧି ବା ମହତତ୍ତ୍ୱ ସୃଷ୍ଟି ହୋଇଥାଏ ।

**ଏକମେବ ମହାନାତ୍ମା ସୋଽହଙ୍କାରୋଽଭିଧୀୟତେ ।**
**ସ ଜୀବଃ ସୋଽନ୍ତରାତ୍ମେତି ଗୀୟତେ ତତ୍ତ୍ୱଚିନ୍ତକୈଃ ।।୧୩**
**ତେନ ବେଦୟତେ ସର୍ବଂ ସୁଖଂ ଦୁଃଖଂ ଚ ଜନ୍ମସୁ ।**
**ସ ବିଜ୍ଞାନାତ୍ମକ ତସ୍ୟ ମନଃ ସ୍ୟାଦୁପକାରକମ୍ ।।୧୪**
**ତେ ନାପି ତନ୍ମୟସ୍ତସ୍ମାତ୍ ସଂସାରଃ ପୁରୁଷସ୍ୟ ତୁ ।**
**ସ ଚାବିବେକଃ ପ୍ରକୃତୌ ସଙ୍ଗାତ୍କାଳେନ ସୋଽଭବତ୍ ।।୧୫**

ଏହି ମହାନ୍ ଆତ୍ମାକୁ ଅହଙ୍କାର କୁହାଯାଏ । ଏହାକୁ ଜୀବର ଅନ୍ତରାତ୍ମା କୁହାଯାଏ । ଏହି ନିଶ୍ଚୟତା ତତ୍ତ୍ୱଜ୍ଞ ପୁରୁଷମାନେ ଜାଣିପାରନ୍ତି । ଏହି କାରଣରୁ ନାନା ପ୍ରକାରର ଯୋନିରେ ସୁଖ, ଦୁଃଖ ଅନୁଭବ କରୁଥାଏ । ଏହି ବିଜ୍ଞାନ ଆତ୍ମାର ସାଂସାରିକ ସୁଖଦୁଃଖର ଅନୁଭବରେ ମନ ଉପକାରକ ଅଟେ । ଏହା ସହ ତନ୍ମୟତା ପ୍ରାପ୍ତ କରି ପୁରୁଷକୁ ସଂସାରାବସ୍ଥା ପ୍ରାପ୍ତ ହୋଇଥାଏ । ଏହାକୁ ଅବିବେକ କୁହାଯାଏ । ପ୍ରକୃତିରେ କାଳର ସଙ୍ଗତ ପ୍ରାପ୍ତ ହେଲା ପରେ ଏହିସବୁ କଥାର ଉତ୍ପତ୍ତି ହୋଇଥାଏ ।

**କାଳଃ ସୃଜତି ଭୂତାନି କାଳଃ ସଂହରତେ ପ୍ରଜାଃ ।**
**ସର୍ବେ କାଳସ୍ୟ ବଶଗା ନ କାଳଃ କସ୍ୟଚିଦ୍ୱଶେ ॥୧୬**
**ସୋଽନ୍ତରା ସର୍ବମୈବେଦଂ ନିୟଚ୍ଛତି ସନାତନଃ ।**
**ପ୍ରୋଚ୍ୟତେ ଭଗବାନ୍ ପ୍ରାଣଃ ସର୍ବଜ୍ଞଃ ପୁରୁଷୋତ୍ତମଃ ॥୧୭**

କାଳ ହିଁ ସମସ୍ତ ପ୍ରାଣୀମାନଙ୍କୁ ଉତ୍ପନ୍ନ କରେ ଓ ସଂହାର କରିଥାଏ । ସମସ୍ତ ପ୍ରାଣୀ କାଳର ବଶୀଭୂତ ଅଟନ୍ତି । କାଳ କାହାର ବଶରେ ନଥାଏ । ଏହିସବୁ ନାମରୂପାତ୍ମକ ବସ୍ତୁଗୁଡ଼ିକୁ କୌଣସି ଅପେକ୍ଷା ନକରି ସ୍ୱୟଂ ସମସ୍ତ ବସ୍ତୁର ନିୟାମକ ଅଟେ । ଏହାକୁ ସନାତନ ସମସ୍ତ ଐଶ୍ୱର୍ଯ୍ୟଯୁକ୍ତ, ସର୍ବଜ୍ଞ, ପୁରୁଷୋତ୍ତମ ତଥା ପ୍ରାଣ କୁହାଯାଏ ।

**ସର୍ବେନ୍ଦ୍ରିୟେଭ୍ୟଃ ପରମଂ ମନଃ ଆହୁର୍ମନୀଷିଣଃ ।**
**ମନସସ୍ଥାପ୍ୟହଙ୍କାରମହଙ୍କାରାନ୍ ମହାନ୍ ପରଃ ॥୧୮**
**ମହତଃ ପରମବ୍ୟକ୍ତମବ୍ୟକ୍ତାତ୍ପୁରୁଷଃ ପରଃ ।**
**ପୁରୁଷାଦ୍ଭଗବାନ୍ ପ୍ରାଣସ୍ତସ୍ୟ ସର୍ବମିଦଂ ଜଗତ୍ ॥୧୯**
**ପ୍ରାଣାତ୍ପରତରଂ ବ୍ୟୋମ ବ୍ୟୋମାତୀତୋଽଗ୍ନିରୀଶ୍ୱରଃ ।**
**ସୋଽହଂ ବ୍ରହ୍ମାନାବ୍ୟୟଃ ଶାନ୍ତୋ ମାୟାତୀତମିଦଂ ଜଗତ୍॥୨୦**

ବିଦ୍ୱାନ୍ ଲୋକ ସମସ୍ତ ଇନ୍ଦ୍ରିୟଠାରୁ ଶ୍ରେଷ୍ଠ ମନ ବୋଲି କହିଥାନ୍ତି । ମନଠାରୁ ଶ୍ରେଷ୍ଠ ଅହଙ୍କାର, ଅହଙ୍କାରଠାରୁ ଶ୍ରେଷ୍ଠ ମହତତ୍ତ୍ୱ, ମହତତ୍ତ୍ୱଠାରୁ ଶ୍ରେଷ୍ଠ ଅବ୍ୟକ୍ତ, ଅବ୍ୟକ୍ତଠାରୁ ଶ୍ରେଷ୍ଠ ପୁରୁଷ, ପୁରୁଷଠାରୁ ଶ୍ରେଷ୍ଠ ପ୍ରାଣ (ସୂତ୍ରାତ୍ମା) ଅଟେ । ଏହାର ଅଧୀନରେ ଏହି ଜଗତ୍ ସଞ୍ଚାଳିତ ହୋଇଥାଏ । ପ୍ରାଣଠାରୁ ଶ୍ରେଷ୍ଠ, ବ୍ୟୋମଠାରୁ ଶ୍ରେଷ୍ଠ ସମସ୍ତଙ୍କର ଅଗ୍ରଣୀ ରୂପରେ ଥାଆନ୍ତି ସେହି ଈଶ୍ୱର, ସେ ମୁଁ ଅଟେ ।

ପରଂବ୍ରହ୍ମ ବିକାରଶୂନ୍ୟ, ଶାନ୍ତ, ମାୟାତୀତ ରୂପରେ ବେଦରେ ପ୍ରତିପାଦିତ କରାଯାଇଛି । ସେହି ଅବସ୍ଥାରେ ଏହି ଜଗତ୍ ମଧ୍ୟ ମାୟାତୀତ ସ୍ୱରୂପାତ୍ମକ ଅଟେ । ସଂକ୍ଷେପରେ ବେଦରେ କେତୋଟି ମନ୍ତ୍ରର ରହସ୍ୟ ଏହି ଶ୍ଳୋକରେ କୁହାଯାଇଛି । ଯାହାର ଲେଖା ପ୍ରମାଣ ରୂପରେ ଏହିପ୍ରକାର କରାଯାଇଛି- ''ଇନ୍ଦ୍ରିୟେଭ୍ୟଶ୍ଚ ପରଂ ମନଃ, ମନସସ୍ତୁ ପରାବୁଦ୍ଧି, ବୁଦ୍ଧେରାତ୍ମା ମହାନ୍ ପରଃ, ମହତଃ ପରମବ୍ୟକ୍ତମବ୍ୟକ୍ତାତ୍ ପୁରୁଷଃ ପରଃ, ପୁରୁଷାନ୍ ପରଃ କିଞ୍ଚିତ୍ ସା ଶ୍ରେଷ୍ଠା ସା ପରୋ ଗତିଃ'' (କଠ.ଉ. ୧/୧୦,୧୧) ଅର୍ଥ ସ୍ପଷ୍ଟ ଅଟେ ।

**ନାସ୍ତି ମତ୍ତଃ ପରଂ ଭୂତଂ ମାଞ୍ଚ ବିଜ୍ଞାୟ ମୁଚ୍ୟତେ ।**
**ନିତ୍ୟଂ ନାସ୍ତୀତି ଜଗତି ଭୂତଂ ସ୍ଥାବରଜଙ୍ଗମମ୍ ॥ ୨୧**
**ଋତେ ମାମେବ ମବ୍ୟକ୍ତଂ ବ୍ୟୋମରୂପଂ ମହେଶ୍ୱରମ୍ ।**
**ସୋଽହଂ ସୃଜାମି ସକଳଂ ସଂହରାମି ସଦା ଜଗତ୍ ॥୨୨**
**ମାୟୀ ମାୟାମୟୋ ଦେବଃ କାଳେନ ସହ ସଙ୍ଗତଃ ।**
**ମତ୍ସନ୍ନିଧାବେଷ କାଳଃ କରୋତି ସକଳଂ ଜଗତ୍ ॥**
**ନିୟୋଜୟତ୍ୟନନ୍ତାତ୍ମା ହ୍ୟେତଦ୍‌ବେଦାନୁଶାସନମ୍ ॥୨୩**

ଏହାଠାରୁ ନିତ୍ୟ କୌଣସି ପଦାର୍ଥ ନାହିଁ । ସ୍ଥାବର ଜଙ୍ଗମ ଯେତେ ପଦାର୍ଥ କେବଳ ଏକ ବ୍ୟୋମସ୍ୱରୂପ ମହେଶ୍ୱର ଏବଂ ଅବ୍ୟକ୍ତସ୍ୱରୂପ ମହେଶ୍ୱରଙ୍କୁ ଛାଡ଼ି ଅର୍ଥାତ୍ ଆତ୍ମା ସତ୍ୟ ଅଟେ । ଏହାଠାରୁ ଭିନ୍ନ ସମସ୍ତ ଜଗତ୍ ମିଥ୍ୟା ଅଟେ । ମୁଁ (ଶଙ୍କର)ନିଜର ମାୟାଶକ୍ତିଦ୍ୱାରା କାଳର ସଙ୍ଗତ ହୋଇ ଜଗତକୁ ଉତ୍ପନ୍ନ କରି ଜଗତର ସ୍ଥିତି କରିଥାଏ। ତଥା ଅନ୍ତରେ ଶେଷରେ ସମସ୍ତଙ୍କର ଲୟ ମଧ୍ୟ କରିଥାଉ । ଆମର ଏହି ସନ୍ନିଧିରେ କାଳ ସମସ୍ତ ଜଗତକୁ ଉତ୍ପନ୍ନ କରିଥାଏ । ସେହି ଅନ୍ତରାତ୍ମା ସ୍ୱରୂପ ସମସ୍ତଙ୍କୁ ଯଥାତଥ୍ୟ ରୂପରେ ନିଯୁକ୍ତି ମଧ୍ୟ କରିଥାଏ । ଏହା ବେଦର ଅନୁଶାସନ ଅଟେ ।

ଇତି ଶ୍ରୀକୂର୍ମପୁରାଣେ ଉତ୍ତରାର୍ଦ୍ଧେ ଈଶ୍ୱରଗୀତାସୁ ଉପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଋଷିବ୍ୟାସସଂବାଦେ ତୃତୀୟୋଽଧ୍ୟାୟଃ ।

*ଏହି ଅଧ୍ୟାୟରେ ଭଗବଦ୍‌ଗୀତାର ତ୍ରୟୋଦଶ ଅଧ୍ୟାୟର ବହୁତ ସାମଞ୍ଜସ୍ୟ ରହିଛି । ଭଗବଦ୍‌ଗୀତାର ତ୍ରୟୋଦଶ ଅଧ୍ୟାୟର ୧୩ ନମ୍ବର ଶ୍ଳୋକ ସମ୍ପୂର୍ଣ୍ଣ ସମାନ । ଏହି ଗୀତାରେ ମଧ୍ୟ ତୃତୀୟ ଅଧ୍ୟାୟର ଦ୍ୱିତୀୟ ଶ୍ଳୋକଟି ସମାନ ଦେଖାଯାଏ । ଯଥା-*

ସର୍ବତଃ ପାଣିପାଦଂ ତତ୍ସର୍ବତୋଽକ୍ଷିଶିରୋମୁଖମ୍ ।
ସର୍ବତଃ ଶ୍ରୁତିମଲ୍ଲୋକେ ସର୍ବମାବୃତ୍ୟ ତିଷ୍ଠତି ॥

ସେପରି ୧୪ ନମ୍ବର ଶ୍ଳୋକରେ ମଧ୍ୟ ଏହି ଗୀତାର ତିନି ନମ୍ବର ଶ୍ଳୋକର ସାମଞ୍ଜସ୍ୟ ରହିଛି । ଏହିପରି ଅନେକ ସାମଞ୍ଜସ୍ୟ ଦେଖାଯାଏ । ଭଗବଦ୍‌ଗୀତାର ତ୍ରୟୋଦଶ ଅଧ୍ୟାୟର ନାମ ହେଲା କ୍ଷେତ୍ରକ୍ଷେତ୍ରଜ୍ଞ ଯୋଗ । ତେଣୁ କ୍ଷେତ୍ର କଣ ଓ କ୍ଷେତ୍ରଜ୍ଞ କିଏ ଏହି ଅଧ୍ୟାୟରେ ବୁଝାଇ ଦିଆଯାଇଛି ।

ସର୍ବେନ୍ଦ୍ରିୟଗୁଣାଭାସଂ ସର୍ବେନ୍ଦ୍ରିୟବିବର୍ଜିତମ୍ ।
ଅସକ୍ତଂ ସର୍ବଭୃଚ୍ଚୈବ ନିର୍ଗୁଣଂ ଗୁଣଭୋକ୍ତୃ ଚ ॥ (ଭ.ଗୀ. ୧୩/୧୪)

ଭଗବଦ୍‌ଗୀତାର ତ୍ରୟୋଦଶ ଅଧ୍ୟାୟର ୧୪ ନମ୍ବର ଶ୍ଳୋକରେ ବର୍ଣ୍ଣନା ହେଲା ଯେ ସେହି ପରଂବ୍ରହ୍ମ କେବଳ ମୋକ୍ଷାଭିଳାଷିମାନଙ୍କର ଜ୍ଞେୟ ଅଟନ୍ତି । ସେ ନିରାକାର । ତାଙ୍କ ଶକ୍ତି ବିନା କୌଣସି ଇନ୍ଦ୍ରିୟ ପରିଚାଳିତ ହେବା ସମ୍ଭବ ନୁହେଁ । ମାତ୍ର ସେ ନିଜେ କୌଣସି ଇନ୍ଦ୍ରିୟମାନଙ୍କର ଅନ୍ତର୍ଭୁକ୍ତ ନୁହଁନ୍ତି । ଅର୍ଥାତ୍ ସେ ସକଳ ଇନ୍ଦ୍ରିୟମାନଙ୍କର ବିଷୟ ତଥା ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ – ଏହିସବୁର ପ୍ରକାଶକ ଅଟନ୍ତି । ଏହି ଈଶ୍ୱରଗୀତାରେ ଏହାର ମଧ୍ୟ ବର୍ଣ୍ଣନା ରହିଛି-

ସର୍ବେନ୍ଦ୍ରିୟଗୁଣାଭାସଂ ସର୍ବେନ୍ଦ୍ରିୟବିବର୍ଜିତମ୍ ।
ସର୍ବାଧାରଂ ସଦାନନ୍ଦମବ୍ୟକ୍ତଂ ଦ୍ୱୈତବର୍ଜିତମ୍ ॥(ଈ.ଗୀ.୩/୩)

ଇନ୍ଦ୍ରିୟମାନଙ୍କର ପ୍ରକାଶକ ତଥା ଗୁଣର ପ୍ରକାଶକମାନେ ସମସ୍ତ ଇନ୍ଦ୍ରିୟଠାରୁ ଭିନ୍ନ ତଥା ସମସ୍ତ ବସ୍ତୁର ଅଧିଷ୍ଠାନ, ସଦା ଆନନ୍ଦସ୍ୱରୂପ, ଅବ୍ୟକ୍ତ ତଥା ଦ୍ୱୈତଠାରୁ ଭିନ୍ନ ଅଟେ । ପୁନର୍ବାର କ୍ଷେତ୍ରକ୍ଷେତ୍ରଜ୍ଞ ଯୋଗର ୨୧ ନମ୍ବର ଶ୍ଳୋକ ଭଗବଦ୍‌ଗୀତାରେ କୁହାଯାଇଛି ଯେ,

ପୁରୁଷଃ ପ୍ରକୃତିସ୍ଥୋ ହି ଭୁଙ୍‌କ୍ତେ ପ୍ରକୃତିଜାନ୍ ଗୁଣାନ୍ ।
କାରଣଂ ଗୁଣସଙ୍ଗୋଽସ୍ୟ ସଦସଦ୍ୟୋନିଜନ୍ମସୁ ॥ (ଭ.ଗୀ. ୧୩/୨୧)

ପୁରୁଷ ଅର୍ଥାତ୍ ଜୀବାତ୍ମା ପ୍ରକୃତି ସହିତ ଅଭେଦ ରୂପରେ ମିଳିତ ହୋଇଥିବାରୁ ପ୍ରକୃତିରୁ ଉତ୍ପନ୍ନ ହୋଇଥିବା ଦୁଃଖ ଓ ସୁଖକୁ ଭୋଗ କରନ୍ତି ଏବଂ ପ୍ରକୃତି ଜନିତ ଗୁଣ ସଙ୍ଗ ଅନୁସାରେ ଜୀବାତ୍ମାର ଉତ୍ତମ ଓ ମଧ୍ୟମ ଯୋନିରେ ଜନ୍ମ ହୁଏ ଅର୍ଥାତ୍ ଜୀବାତ୍ମା ସତ୍ତ୍ୱଗୁଣଯୁକ୍ତ ହେଲେ ଦେବଯୋନିରେ, ରଜୋଗୁଣଯୁକ୍ତ ହେଲେ ମନୁଷ୍ୟ ଯୋନିରେ ଓ ତମୋଗୁଣଯୁକ୍ତ ହେଲେ ପଶୁ ଯୋନିରେ ଜନ୍ମଗ୍ରହଣ କରନ୍ତି । ଏହି ତ୍ରିଗୁଣର ସଙ୍ଗ ବର୍ଜିତ ହେଲେ ଅର୍ଥାତ୍ ନିଜକୁ ସତ୍ତ୍ୱଗୁଣତ୍ରୟରେ

ନିର୍ଲିପ୍ତ ବୋଲି ବୁଝିପାରିଲେ କୌଣସି ଯୋନିରେ ଜନ୍ମ ହେବାର ଆଶଙ୍କା ନଥାଏ। ଈଶ୍ୱରଗୀତାରେ ମଧ୍ୟ ଏହି ଅଧ୍ୟାୟରେ ୧୧ ନମ୍ବର ଶ୍ଳୋକରେ କୁହାଗଲା।

ପୁରୁଷଃ ପ୍ରକୃତିସ୍ଥୋ ବୈ ଭୁଙ୍କ୍ତେ ଯଃ ପ୍ରାକୃତାନ୍ ଗୁଣାନ୍ ।
ଅହଙ୍କାରବିମୁକ୍ତତ୍ୱାତ୍ ପ୍ରୋଚ୍ୟତେ ପଞ୍ଚବିଂଶକଃ ॥

ପ୍ରକୃତି ସମ୍ବନ୍ଧରେ ରହି ପୁରୁଷ ସତ୍ୱ-ରଜ-ତମ ଆଦି ଗୁଣର କାର୍ଯ୍ୟକୁ ଉପଭୋଗ କରିଥାଏ । ଯେତେବେଳେ ଅହଙ୍କାରରୁ ବିମୁକ୍ତ ହୋଇଥାଏ, ସେତେବେଳେ ଶୁଦ୍ଧସ୍ୱରୂପାତ୍ମକ ହୋଇଯାଏ ।

ଏହିପରି ଶ୍ରୀମଦ୍‌ଭଗବଦ୍‌ଗୀତାର ପ୍ରତ୍ୟେକ ଅଧ୍ୟାୟର ସାରାର୍ଥ ସହ ଅନେକ ସାମଞ୍ଜସ୍ୟ ରକ୍ଷା କରିପାରିଥିବା ଏହି ଈଶ୍ୱରଗୀତା ଭଗବାନ୍ ଈଶ୍ୱରଙ୍କଦ୍ୱାରା କଥିତ । ବ୍ରହ୍ମନିଷ୍ଠ ମୁନିଗଣ ଏହି ତତ୍ତ୍ୱବାଣୀକୁ ଶୁଣିଥାଆନ୍ତି ।

---*---

# ଚତୁର୍ଥ ଅଧ୍ୟାୟ

## ଶିବତତ୍ତ୍ୱ ଯୋଗ

*(ଏହି ଅଧ୍ୟାୟରେ ଶିବତତ୍ତ୍ୱର ଶ୍ରେଷ୍ଠତା ବର୍ଣ୍ଣନା କରାଯାଇଛି । ବ୍ରହ୍ମା, ବିଷ୍ଣୁ, ରୁଦ୍ରଙ୍କର ମଧ୍ୟ ପରଂବ୍ରହ୍ମ ସ୍ୱରୂପ ଶିବଙ୍କ ସ୍ୱରୂପ ବୋଲି କୁହାଯାଇଛି । ମହାଦେବଙ୍କ ଭକ୍ତମାନଙ୍କ ପ୍ରଶଂସା ମଧ୍ୟ କରାଯାଇଛି ଏବଂ ଶେଷରେ ଈଶ୍ୱରଙ୍କ ମାହାତ୍ମ୍ୟ ମଧ୍ୟ ସ୍ପଷ୍ଟରୂପରେ କୁହାଯାଇଛି । ଏଣୁ ଏହି ଅଧ୍ୟାୟକୁ ଶିବତତ୍ତ୍ୱ ଯୋଗ ମଧ୍ୟ କୁହାଯାଏ ।)*

(ଈଶ୍ୱରୋବାଚ)

**ବକ୍ଷେ ସମାହିତା ଯୂୟଂ ଶୃଣୁଧ୍ୱଂ ବ୍ରହ୍ମବାଦିନଃ ।**
**ମାହାତ୍ମ୍ୟଂ ଦେବଦେବସ୍ୟ ଯେନ ସର୍ବଂ ପ୍ରବର୍ତ୍ତତେ ॥୧**
**ନାହଂ ତପୋଭିର୍ବିବିଧୈର୍ନ ଦାନେନ ନ ଚେଜ୍ୟୟା ।**
**ଶକ୍ୟା ହି ପୁରୁଷୈର୍ଜ୍ଞାତୁମୃତେ ଭକ୍ତିମନୁତ୍ତମାମ୍ ॥୨**

ହେ ବ୍ରହ୍ମବେତ୍ତା ମୁନିଗଣ ! ଦେବାଧିଦେବ ପରମାତ୍ମାଙ୍କର ମହିମା ମୁଁ ବର୍ଣ୍ଣନା କରୁଅଛି । ଯାହାଦ୍ୱାରା ସମସ୍ତ ଜଗତ ପ୍ରବୃତ୍ତି କରିଥାଏ । ଏହାକୁ ସାବଧାନ ଚିତ୍ତଦ୍ୱାରା ଆସି ଏଠାରେ ଶ୍ରବଣ କର । ମୁଁ ନାନାପ୍ରକାରର ତପସ୍ୟାଦ୍ୱାରା ତଥା ବିବିଧ ପ୍ରକାରର ଦାନ ଏବଂ ଯଜ୍ଞଦ୍ୱାରା ପୁରୁଷକୁ ଜାଣିପାରି ନାହିଁ । ପ୍ରକୃତରେ ଉତ୍କୃଷ୍ଟ ଭକ୍ତି ହିଁ ଆମର ସ୍ୱରୂପକୁ ଜାଣିବାରେ କାରଣ ଅଟେ ।

**ଅହଂ ହି ସର୍ବଭୂତାନାମନ୍ତସ୍ତିଷ୍ଠାମି ସର୍ବତ୍ରଃ ।**
**ମାଂ ସର୍ବସାକ୍ଷିଣଂ ଲୋକୋ ନ ଜାନାତି ମୁନୀଶ୍ୱରାଃ ॥୩**
**ଯସ୍ୟାନ୍ତରା ସର୍ବମିଦଂ ଯୋ ହି ସର୍ବାନ୍ତକଃ ପରଃ ।**
**ସୋଽହଂ ଧାତା ବିଧାତା ଚ କାଲୋଽଗ୍ନିର୍ବିଶ୍ୱତୋମୁଖଃ ॥୪**

ହେ ମୁନୀଶ୍ୱର ମୁଁ ହିଁ ସମସ୍ତ ପ୍ରାଣୀଙ୍କର ଅନ୍ତଃକରଣରେ ସର୍ବତୋ ଭାବରେ ରହିଥାଏ । ଯେଉଁ ପରମାତ୍ମାଙ୍କର ଅନ୍ତର୍ଗତ ଅଟେ ଏହି ସମସ୍ତ ଦୃଶ୍ୟମାନ ଜଗତ୍ ନାନା ପ୍ରକାରରେ ଚେଷ୍ଟାଦ୍ୱାରା ଦେଖାଯାଏ ଏବଂ ଯେଉଁ ସବୁର ଅନ୍ତ ବା ବିନାଶକ ଅଟେ ତାହା ମୁଁ ହିଁ କରିଥାଏ । ଧାତା, ବିଧାତା, କାଳ, ବିଶ୍ୱତୋମୁଖ ଓ ଅଗ୍ନି - ଏସବୁ ମୋର ହିଁ ସଂଜ୍ଞା ଅଟେ ।

**ନ ମାଂ ପଶ୍ୟନ୍ତି ମୁନୟଃ ସର୍ବେ ପିତୃଦିବୌକସଃ ।**
**ବ୍ରହ୍ମା ଚ ମନବଃ ଶକ୍ରୋ ଯେ ଚାନ୍ୟେ ପ୍ରଥିତୌଜସଃ ॥୫**
**ଗୃଣନ୍ତି ସତତଂ ବେଦା ମାମେକଂ ପରମେଶ୍ୱରମ୍ ।**
**ଯଜନ୍ତି ବିବିଧୈର୍ଯଜ୍ଞୈର୍ବ୍ରାହ୍ମଣା ବୈଦିକୈର୍ମଖୈଃ ॥୬**
**ସର୍ବଲୋକା ନମସ୍ୟନ୍ତି ବ୍ରହ୍ମା ଲୋକ ପିତାମହଃ ।**
**ଧ୍ୟାୟନ୍ତି ଯୋଗିନୋ ଦେବଂ ଭୂତାଧିପତିମୀଶ୍ୱରମ୍ ॥୭**

ହେ ମୁନିଗଣ ! ପିତୃ, ଦେବତା, ମୁନି, ବ୍ରହ୍ମା, ଇନ୍ଦ୍ର, ମନୁ ଆଦି ବିସ୍ତୃତ ପରାକ୍ରମୀ ମଧ୍ୟ ଆମର ସ୍ୱରୂପକୁ ଯଥାର୍ଥ ଭାବରେ ଦେଖିପାରନ୍ତି ନାହାଁନ୍ତି । ବେଦ ସର୍ବଦା ଆମକୁ ଏକ ତଥା ପରମେଶ୍ୱରରୂପ ବୋଲି ପ୍ରତିପାଦନ କରିଥାଏ । ''ଏକଂ ସହ ବିପ୍ରା ବହୁଧା ବଦନ୍ତି'' (ଋକ୍.ସଂ. ୧୦/୧୬/୭୨) ଅର୍ଥାତ୍ ବେଦପାରଗ ବ୍ରହ୍ମଣ ନାନାପ୍ରକାରର ବୈଦିକ ଯଜ୍ଞଦ୍ୱାରା ଆମର ପୂଜା କରିଥାନ୍ତି । ଯେତେସବୁ ସମୁଦାୟ ଅଛନ୍ତି, ସମସ୍ତେ ଆମକୁ ହିଁ ନମସ୍କାର କରନ୍ତି । ତିନିଲୋକରେ ପିତାମହ ବ୍ରହ୍ମା ତଥା ଯୋଗୀଶ୍ୱରଗଣ ଭୂତାଦି ଈଶ୍ୱର ସ୍ୱରୂପ ପରମାତ୍ମା ଦେବଙ୍କର ଧ୍ୟାନ କରନ୍ତି ଅର୍ଥାତ୍ ମୁଁ ହିଁ ସର୍ବୋତ୍କୃଷ୍ଟ ।

**ଅହଂ ହି ସର୍ବହବିଷାଂ ଭୋକ୍ତା ଚୈବ ଫଳପ୍ରଦଃ ।**
**ସର୍ବଦେବତନୁର୍ଭୂତ୍ୱା ସର୍ବାତ୍ମା ସର୍ବସଂପ୍ଲୁତଃ ॥୮**
**ମାଂ ପଶ୍ୟନ୍ତି ହି ବିଦ୍ୱାଂସୋ ଧାର୍ମିକା ବେଦବାଦିନଃ ।**
**ତେଷାଂ ସନ୍ନିହିତୋ ନିତ୍ୟଂ ଯେ ମାଂ ନିତ୍ୟମୁପାସତେ ॥୯**
**ବ୍ରାହ୍ମଣାଃ କ୍ଷତ୍ରିୟା ବୈଶ୍ୟା ଧାର୍ମିକାମାମୁପାସତେ ।**
**ତେଷାଂ ଦଦାମି ତତ୍ସ୍ଥାନମାନନ୍ଦଂ ପରମଂ ପଦମ୍ ॥୧୦**

ବ୍ରାହ୍ମୀ ସ୍ଥିତି ରୂପରେ ଶ୍ରୀଶଙ୍କରଦେବ କହିଛନ୍ତି ହେ ମୁନିଗଣ ! ମୁଁ ହିଁ ଯଜ୍ଞରେ ହବନ କରାଯାଉଥିବା ସମସ୍ତ ଆହୁତି ଦ୍ରବ୍ୟର ଭୋକ୍ତା ଅଟେ । ତଥା ଯେଉଁ ଯେଉଁ କାମନାଗୁଡ଼ିକୁ ବଶୀଭୂତ କରି ଯେଉଁ କର୍ମରେ ତତ୍ପର ହେବେ ମୁଁ ସେହି ସେହି କର୍ମର ଫଳଦାତା ଅଟେ । ସମସ୍ତ ଦେବତାଙ୍କ ସ୍ୱରୂପରେ ମୁଁ ନାନାପ୍ରକାରର ଶରୀରଧାରଣ କରି ରହିଥାଏ । ମୁଁ ହିଁ ଆତ୍ମା ଅଟେ । ସବୁ ଦ୍ରବ୍ୟରେ ମୁଁ ହିଁ ଲୁଚି ରହିଥାଏ, ବେଦବାଦୀ ଧାର୍ମିକ ବିଦ୍ୱାନ୍‌ମାନେ ମତେ ହିଁ ସର୍ବତ୍ର ଦେଖିଥାନ୍ତି। ଯିଏ ମୋର ଉପାସନା କରିଥାଏ, ମୁଁ ତାଙ୍କର ସର୍ବଦା ସମୀପରେ

ଥାଏ । ଯେଉଁ ଧାର୍ମିକ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ମୋର ଉପାସନା କରିଥାଏ । ମୁଁ ତାଙ୍କୁ ଆନନ୍ଦମୟ ପରମପଦ ଶ୍ରେଷ୍ଠପଦ ପ୍ରଦାନ କରିଥାଏ ।

**ଅନ୍ୟେଽପି ଯେ ସ୍ୱଧର୍ମସ୍ଥାଃ ଶୂଦ୍ରାଦ୍ୟା ନୀଚଜାତୟଃ ।**
**ଭକ୍ତିମନ୍ତଃ ପ୍ରମୁଚ୍ୟନ୍ତେ କାଳେନାପି ହି ସଙ୍ଗତାଃ ॥୧୧**
**ମଦ୍‌ଭକ୍ତା ନ ବିନଶ୍ୟନ୍ତି ମଦ୍‌ଭକ୍ତା ବୀତକଳ୍ମଷାଃ ।**
**ଆଦାବେବ ପ୍ରତିଜ୍ଞାତଂ ନ ମେ ଭକ୍ତଃ ପ୍ରଣଶ୍ୟତି ॥୧୨**
**ଯୋ ବୈ ନିନ୍ଦନ୍ତି ତଂ ମୂଢୋ ଦେବଦେବଂ ସ ନିନ୍ଦତି ।**
**ଯୋ ହି ପୂଜୟତେ ଭକ୍ତ୍ୟା ସ ପୂଜୟତି ମାଂ ସଦା ॥୧୩**

ଏହି ପୂର୍ବୋକ୍ତ ତିନି ବର୍ଣ୍ଣନାଠାରୁ ଭିନ୍ନ ଯେଉଁ ନୀଚ ଶୂଦ୍ରବର୍ଣ୍ଣ ସେମାନେ ମଧ ଭକ୍ତିଯୁକ୍ତ ହୋଇ ସ୍ୱଧର୍ମ ପାଳନରେ ତତ୍ପର ହେଲେ ସମୟାନୁସାରେ ମୋକ୍ଷ ପାଇଁ ସାମର୍ଥ୍ୟଲାଭ କରିଥାନ୍ତି । ଆମର ଭକ୍ତମାନେ କେବେହେଲେ ବିନାଶଭାବ ପ୍ରାପ୍ତ ହୁଅନ୍ତି ନାହିଁ। କାରଣ ସେମାନେ ବୀତକଳ୍ମ ଅର୍ଥାତ୍ ପାପଶୂନ୍ୟ ଅଟନ୍ତି । ମୁଁ ପୂର୍ବରୁ ମଧ କହିଥିଲି ଯେ ମୋର ଭକ୍ତ କେତେବେଳେ ହେଲେ ନଷ୍ଟ ହୁଅନ୍ତି ନାହିଁ, ଯେଉଁ ବ୍ୟକ୍ତି ମୋର ଭକ୍ତକୁ ନିନ୍ଦା କରିଥାଏ, ସେ ସାକ୍ଷାତ୍ ଦେବାଧିଦେବ ପରଂବ୍ରହ୍ମଙ୍କୁ ନିନ୍ଦା କଲାପରି ଜଣାଯାଏ । ଯେଉଁ ଲୋକ ତାଙ୍କୁ ପୂଜା କରନ୍ତି ସେ ମୋର ହିଁ ପୂଜା କରନ୍ତି ବୋଲି ଧରାଯାଏ । ଆତ୍ମଜ୍ଞ ପୁରୁଷଙ୍କର ପୂଜାର ମାହାତ୍ମ୍ୟ ଉପନିଷଦ୍ ମଧ କୁହାଯାଇଛି ଯେ, ''ତସ୍ମାଦାତ୍ମଜ୍ଞ ହ୍ୟର୍ଚୟେଦ୍ ଭୂତିକାମଃ'' (ମୁ.ଉ. ୩/୧/୧୦) ଅର୍ଥାତ୍ ଐଶ୍ୱର୍ଯ୍ୟକୁ ଇଚ୍ଛା ରଖିଥିବା ବ୍ୟକ୍ତି ବ୍ରହ୍ମବେତ୍ତା ଈଶ୍ୱରପରାୟଣ ପୁରୁଷଙ୍କ ସେବା କରେ ତଥା ପାଷାଣ୍ଡୀ ଧୂର୍ତ୍ତଙ୍କର ସେବାରୁ ପରାଙ୍ମୁଖ ହୋଇଥାଏ ।

**ପତ୍ରଂ ପୁଷ୍ପଂ ଫଳଂ ତୋୟଂ ମଦାରାଧନକାରଣାତ୍ ।**
**ଯୋ ମେ ଦଦାତି ନିୟତଂ ସ ମେ ଭକ୍ତଃ ପ୍ରିୟୋ ମମ ॥୧୪**

ଯେ କେହି ଭକ୍ତ ପୁରୁଷ ଆମଲାଗି ଶ୍ରଦ୍ଧାରେ ପତ୍ର, ପୁଷ୍ପ, ଫଳ ଓ ଜଳ ପ୍ରଦାନ କରିଥାଏ ସେହି ଭକ୍ତ ମୋର ବହୁତ ପ୍ରିୟ ହୋଇଥାଏ ।

**ଅହଂ ହି ଜଗତାମାଦୌ ବ୍ରହ୍ମାଣଂ ପରମେଷ୍ଠିନମ୍ ।**
**ବିଧୟେଦତ୍ତବାନ୍ବେଦାନଶେଷାନାତ୍ମନିଃସୃତାନ୍ ॥୧୫**
**ଅହମେବ ହି ସର୍ବେଷାଂ ଯୋଗିନାଂ ଗୁରୁରବ୍ୟୟଃ ।**
**ଧାର୍ମିକାଣାଞ୍ଚ ଗୋପ୍ତାହଂ ନିହନ୍ତା ବେଦବିଦ୍ୱିଷାମ୍ ॥୧୬**

ସର୍ବପ୍ରଥମେ ମୁଁ ହିଁ ବ୍ରହ୍ମାଙ୍କୁ ଉତ୍ପନ୍ନ କରିଥାଏ । ତାଙ୍କୁ ସମସ୍ତ ଆତ୍ମନିଃସୃତ ବେଦର ପର୍ଯ୍ୟାପ୍ତ ଜ୍ଞାନ ଦେଇଥାଏ । ମୁଁ ହିଁ ସମସ୍ତ ଯୋଗିମାନଙ୍କର ଗୁରୁ ଏବଂ ସମସ୍ତ ଧର୍ମରେ ତତ୍ପରତା ରଖିଥିବା ଧାର୍ମିକ ପୁରୁଷଙ୍କର ରକ୍ଷକ ଏବଂ ବୈଦିକ ଧର୍ମକୁ ବିନାଶ କରୁଥିବା ଶତ୍ରୁମାନଙ୍କର ବିନାଶକ ଉପନିଷଦରେ କୁହାଯାଇଛି- ''ଯୋ ବ୍ରହ୍ମାଣଂ ବିଦଧାତି ପୂର୍ବଂ ଯୋ ବୈ ବେଦାଂଶ୍ଚ ପ୍ରହିଣୋତି ତସ୍ମୈ'' (ଶ୍ୱେ.ଉ. ୬/୧୮) ଅର୍ଥାତ୍ ପରମାତ୍ମା ହିଁ ସର୍ଗର ପ୍ରଥମରେ ବ୍ରହ୍ମାଙ୍କୁ ଉତ୍ପନ୍ନ କରି ବେଦ ପରିଜ୍ଞାନ କରିଥାନ୍ତି । ''ସ ପୂର୍ବେଷାମପି ଗୁରୁଃ କାଳେନବଚ୍ଛେଦାତ୍'' (ଯୋ.ଦ.ପା.ସୂ. ୧/୨୬) । ଅର୍ଥାତ୍ ପୂର୍ବରୁ ଉତ୍ପନ୍ନ ହୋଇ ବ୍ରହ୍ମା ଓ ଅନ୍ୟ ସମସ୍ତ ଋଷିମାନଙ୍କୁ ବେଦର ଜ୍ଞାନ ପ୍ରଦାନ କରି ଏବଂ ତାଙ୍କଦ୍ୱାରା ବୈଦିକ ସମ୍ପ୍ରଦାୟ ପ୍ରବୃତ୍ତ କରିଥିବାରୁ ସେ ସମସ୍ତଙ୍କର ଗୁରୁ ଅଟନ୍ତି ।

**ଅହଂ ହି ସର୍ବସଂସାରାନ୍ମୋଚକୋ ଯୋଗିନାମିହ ।**
**ସଂସାରହେତୁରେବାହଂ ସର୍ବସଂସାରବର୍ଜିତଃ ॥୧୭**
**ଅହମେବାହି ସଂହର୍ତ୍ତା ସଂସ୍ରଷ୍ଟା ପରିପାଳକଃ ।**
**ମାୟା ବୈ ମାମିକା ଶକ୍ତିର୍ମାୟା ଲୋକବିମୋହିନୀ ॥୧୮**
**ମାମୈବ ଚ ପରାଶକ୍ତିର୍ଯାସାଂ ବିଦ୍ୟେତି ଗୀୟତେ ।**
**ନାଶୟାମି ଚ ତାଂ ମାୟାଂ ଯୋଗିନାଂ ହୃଦି ସଂସ୍ଥିତଃ ॥୧୯**

ମୁଁ ହିଁ ଜନ୍ମମରଣ ସଂସାରରୁ ଯୋଗିମାନଙ୍କୁ ମୁକ୍ତ କରିଥାଏ । ସଂସାରର କାରଣ ମୁଁ ଓ ସଂସାରରୁ ମୁକ୍ତିର କାରଣ ମଧ୍ୟ ମୁଁ । ମୁଁ ହିଁ ସଂସାରର କର୍ତ୍ତା । ମୁଁ ଉତ୍ପନ୍ନ କରିଥାଏ, ମୁଁ ରକ୍ଷା ମଧ୍ୟ କରିଥାଏ । ଜଗତକୁ ମୋହିତ କରିପାରୁଥିବା ତ୍ରିଗୁଣାତ୍ମକ ପ୍ରକୃତି ବା ମାୟା ହିଁ ମୋର ଶକ୍ତି ଅଟେ । ତଥା ପରାଶକ୍ତି ଯାହାକୁ ବିଦ୍ୟା କୁହାଯାଏ ତାହା ମଧ୍ୟ ମୋର ଅଧୀନ ଅଟେ । ମୁଁ ଯୋଗିମାନଙ୍କ ହୃଦୟରେ ରହି ନାନାପ୍ରକାରର ଜନ୍ମ-ମରଣ ରୂପ ଦୁଃଖ ପ୍ରଦାନ କରୁଥାଏ ବା ମାୟାକୁ ନାଶ କରିଥାଏ ।

**ଅହଂ ହି ସର୍ବଶକ୍ତୀନାଂ ପ୍ରବର୍ତ୍ତକଃ ନିବର୍ତ୍ତକଃ ।**
**ଆଧାରଭୂତଃ ସର୍ବାସାଂ ନିଧନମମୃତସ୍ୟ ଚ ॥୨୦**
**ଏକା ସର୍ବାନ୍ତରାଶକ୍ତିଃ କରୋତି ବିବିଧଂ ଜଗତ୍ ।**
**ଆସ୍ଥାୟ ବ୍ରହ୍ମଣୋ ରୂପଂ ମନ୍ମୟୀ ମଦଧିଷ୍ଠିତା ॥୨୧**

**ଅନ୍ୟା ଚ ଶକ୍ତିର୍ବିପୁଳା ସଂସ୍ଥାପୟତି ମେ ଜଗତ୍ ।**
**ଭୂତ୍ୱା ନାରାୟଣୋଽନନ୍ତୋ ଜଗନ୍ନାଥୋ ଜଗନ୍ମୟଃ ॥୨୨**
**ତୃତୀୟା ମହତୀ ଶକ୍ତିର୍ନିହନ୍ତି ସକଳଂ ଜଗତ୍ ।**
**ତାମସୀ ମେ ସମାଖ୍ୟାତା କାଳାଖ୍ୟା ରୁଦ୍ରରୂପିଣୀ ॥୨୩**

ମୁଁ ସମସ୍ତ ଶକ୍ତିମାନଙ୍କର ଆଧାର ପ୍ରବର୍ତ୍ତକ ନିବର୍ତ୍ତକ ମଧ୍ୟ ଅଟେ । ଅମୃତପଦ ମୋକ୍ଷର ନିଧାନ ଅର୍ଥାତ୍ ମୂଳସ୍ଥାନ ଅଟେ । ଏହି ଶକ୍ତିମାନଙ୍କ ମଧ୍ୟରୁ ଏକ ଶକ୍ତି ମୋର ଆଶ୍ରୟ ନେଇ ତନ୍ମୟ ହୋଇ ବ୍ରହ୍ମାଙ୍କ ସ୍ୱରୂପରେ ସମସ୍ତ ଜଗତର ଆଭ୍ୟନ୍ତରରେ ରହି ନାନାପ୍ରକାରର ସୃଷ୍ଟି କରିଥାନ୍ତି ଏବଂ ଅନ୍ୟ ଦ୍ୱିତୀୟ ଶକ୍ତି ବିଷ୍ଣୁସ୍ୱରୂପରେ ଏହି ଜଗତକୁ ପାଳନ କରନ୍ତି । ଯାହାକୁ ନାରାୟଣ, ଅନନ୍ତ, ଜଗନ୍ନାଥ ଏବଂ ଜଗନ୍ମୟ ମଧ୍ୟ କହନ୍ତି । ଆମର ଏହି ଜଗତକୁ ପାଳନ କରିବାରେ ଏହି ଶକ୍ତି ପୂର୍ଣ୍ଣ ରୂପରେ ସମର୍ଥ ଅଟନ୍ତି । ଏହି ଦୁଇ ଶକ୍ତିଠାରୁ ଭିନ୍ନ ତୃତୀୟ ଏକ ମହାନ୍ ଶକ୍ତି ଯାହା ଅନ୍ତିମ ସମୟରେ ସମସ୍ତ ଜଗତକୁ ନାଶ କରିଥାଏ । ଯାହାକୁ ରୁଦ୍ରରୂପକ କାଳ କୁହାଯାଏ । ଏହି ଶକ୍ତି ତାମସୀ ଅଟେ ଏବଂ ପୂର୍ବ ଦୁଇ ଶକ୍ତି ରଜୋଗୁଣ ଏବଂ ସତ୍ୱଗୁଣୀ ଅଟେ । ଏହି ତିନି ଶକ୍ତି ଜଗତର ଉତ୍ପତ୍ତି, ସ୍ଥିତି, ସଂହାର କାର୍ଯ୍ୟରେ ନିଜ ନିଜ କାର୍ଯ୍ୟ ସଞ୍ଚାଳନ କରିଥାନ୍ତି । ଏମାନଙ୍କଠାରୁ ଶ୍ରେଷ୍ଠ ତତ୍ତ୍ୱାତ୍ମକ ବ୍ରହ୍ମ ଅଟନ୍ତି, ଯାହାକୁ 'ଶିବ' କୁହାଯାଏ । ତାଙ୍କ ଅଧୀନରେ ସମସ୍ତେ ରହନ୍ତି ।

**ଧ୍ୟାନେନ ମାଂ ପ୍ରପଶ୍ୟନ୍ତି କେଚିଦ୍ଜ୍ଞାନେନ ଚାପରେ ।**
**ଅପରେ ଭକ୍ତିଯୋଗେନ କର୍ମଯୋଗେନ ଚାପରେ ॥୨୪**
**ସର୍ବେଷାମେବ ଭକ୍ତାନାମିଷ୍ଟଃ ପ୍ରିୟତମୋ ମମ ।**
**ଯୋ ହି ଜ୍ଞାନେନ ମାଂ ନିତ୍ୟମାରାଧୟତି ନାନ୍ୟଥା ॥୨୫**

କେହି ଧ୍ୟାନଯୋଗ, କେହି ଜ୍ଞାନଯୋଗ, କେହି ଭକ୍ତିଯୋଗ, ଆଉ କେହି ଅଭ୍ୟାସଯୋଗଦ୍ୱାରା ମୋର ସ୍ୱରୂପକୁ ଦେଖିଥାଆନ୍ତି । ଏହିସବୁ ପ୍ରକାର ଭକ୍ତି ମଧ୍ୟରୁ ଯିଏ ଜ୍ଞାନଯୋଗଦ୍ୱାରା ମୋର ଆରାଧନା କରିଥାଏ, ସେ ମୋର ଅଧିକ ପ୍ରିୟ ହୋଇଥାଏ । କାରଣ ଜ୍ଞାନ ଭିନ୍ନ ମୋର ଅନ୍ୟ ସ୍ୱରୂପ କିଛି ନାହିଁ ।

**ଅନ୍ୟେ ଚ ହରୟେ ଭକ୍ତା ମଦାରାଧନକାରିଣଃ ।**
**ତେଽପି ମାଂ ପ୍ରାପ୍ନୁବନ୍ତ୍ୟେବ ନାବର୍ତ୍ତନ୍ତେ ଚ ବୈ ପୁନଃ ॥୨୬**
**ମୟା ତତମିଦଂ କୃତ୍ସ୍ନଂ ପ୍ରଧାନଂ ପୁରୁଷାତ୍ମକମ୍ ।**
**ମୟ୍ୟେବ ସଂସ୍ଥିତଂ ଚିତ୍ତଂ ମୟା ସମ୍ପ୍ରେର୍ଯ୍ୟତେ ଜଗତ୍ ॥୨୭**

ଏମାନଙ୍କଠାରୁ ଭିନ୍ନ ଯିଏ ବିଷ୍ଣୁ ଶକ୍ତିକୁ ଆରାଧନା କରିଥାଏ । ସେ ମୋର ହିଁ ଆରାଧନା କରିଥାଏ । କାରଣ ବିଷ୍ଣୁଙ୍କ ଆରାଧନାରେ ଅନ୍ତଃକରଣ ଶୁଦ୍ଧ ହୋଇ ମୋର ସ୍ୱରୂପକୁ ପ୍ରାପ୍ତ ହୋଇଥାଏ ଏବଂ ପୁନର୍ବାର ସେହି ଜନ୍ମମରଣରୂପ ସଂସାରରୂପକ ଭୟକୁ ପାଇଥାଏ । ଯେତେସବୁ ପ୍ରକୃତି ପୁରୁଷାତ୍ମକ ଜଗତ୍ ସେସବୁ ମୁଁ ବ୍ୟାପ୍ତ କରିଥାଏ । ମୋ ମଧ୍ୟରେ ଚିତ୍ତ ରହି ସମସ୍ତ ଜଗତକୁ ପ୍ରେରିତ କରିଥାଏ ।

**ନାହଂ ପ୍ରେରୟିତା ବିପ୍ରାଃ ପରମଂ ଯୋଗମାସ୍ଥିତଃ ।**
**ପ୍ରେରୟାମି ଜଗତ୍ କୃତ୍ସ୍ନମେତଦ୍ୟୋ ବେଦ ସୋଽମୃତଃ ॥୨୮**
**ପଶ୍ୟାମ୍ୟଶେଷମେବେଦଂ ବର୍ତ୍ତମାନଂ ସ୍ୱଭାବତଃ ।**
**କରୋତି କାଲୋ ଭଗବାନ୍ ମହାଯୋଗେଶ୍ୱରଃ ସ୍ୱୟମ୍ ॥୨୯**

ପରମଯୋଗ ଅର୍ଥାତ୍ ଏକତ୍ୱ ଭାବର ଆଶ୍ରୟ କରି ମୁଁ କୌଣସି କାର୍ଯ୍ୟର ପ୍ରେରକ ନୁହେଁ । ହେ ବ୍ରାହ୍ମଣେ। ଯେତେବେଳେ ଏହି ଜଗତ୍ କାର୍ଯ୍ୟ ରୂପରେ ରହିଥାଏ, ସେତେବେଳେ ମୁଁ ପ୍ରେରକ ଅଟେ । ଯେତେବେଳେ ଏହା ଅମୃତ ଭାବକୁ ପ୍ରାପ୍ତ କରିଥାଏ, ସେତେବେଳେ ସ୍ୱାଭାବିକ ଭାବରେ ସମସ୍ତ ଜଗତ ନିଜ ପାଖରେ ଦେଖିଥାଏ । ସ୍ୱୟଂ ମହାଯୋଗେଶ୍ୱର ଭଗବାନ୍ କାଳ ଏହି ଜଗତକୁ ସୃଷ୍ଟି କରନ୍ତି । ଏହାର ଭାବ କାଳତତ୍ତ୍ୱ ସହ ସମ୍ବନ୍ଧିତ ଥାଏ ।

**ଯୋଽହଂ ସମ୍ପ୍ରୋଚ୍ୟତେ ଯୋଗୀ ମାୟୀ ଶାସ୍ତ୍ରେଷୁ ସୂରିଭିଃ ।**
**ଯୋଗୀଶ୍ୱରୋଽସୌ ଭଗବାନ୍ମହାଦେବୋ ମହାପ୍ରଭୁଃ ॥୩୦**
**ମହତ୍ତ୍ୱଂ ସର୍ବସତ୍ତ୍ୱାନାଂ ବରତ୍ୱାତ୍ ପରମେଷ୍ଠିନଃ ।**
**ପ୍ରୋଚ୍ୟତେ ଭଗବାନ୍ ବ୍ରହ୍ମା ମହାବ୍ରହ୍ମମୟୋଽମଳଃ ॥୩୧**
**ଯୋ ମାମେବଂ ବିଜାନାତି ମହାଯୋଗେଶ୍ୱରେଶ୍ୱରମ୍ ।**
**ସୋଽବିକଳ୍ପେନ ଯୋଗେନ ଯୁଜ୍ୟତେ ନାତ୍ର ସଂଶୟଃ ॥୩୨**

ବିଦ୍ୱାନ୍ ଲୋକମାନେ ମତେ ଶାସ୍ତ୍ରବିଷୟକୁ ଯୋଗୀ ତଥା ମାୟାପତି ଭାବରେ ପ୍ରତିପାଦନ କରିଥାନ୍ତି । ଏହି ପରଂବ୍ରହ୍ମ 'ଅହଂ' ପଦର ଲକ୍ଷ୍ୟ ସ୍ୱୟଂ ସମସ୍ତ ଐଶ୍ୱର୍ଯ୍ୟଯୁକ୍ତ ଯୋଗୀମାନଙ୍କର ଈଶ୍ୱର ମହାନ୍ ଦେବ ତଥା ମହାପ୍ରଭୁ । ସବୁ ପ୍ରାଣୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ତଥା ଉଚ୍ଚ ପଦରେ ସ୍ଥିତ ହୋଇଥିବାରୁ ତାଙ୍କୁ ଭଗବାନ୍ ବ୍ରହ୍ମା କୁହାଯାଇଛି । କାରଣ ସେ ମହାବ୍ରହ୍ମମୟ ଏବଂ ନିର୍ମଳ ସ୍ୱରୂପ ଅଟନ୍ତି । ଶ୍ରୀଶଙ୍କର ମୁନିମାନଙ୍କୁ କହୁଛନ୍ତି ଯେ, ଯେ କେହି ମହାଯୋଗେଶ୍ୱରଙ୍କୁ

ମଧ ଈଶ୍ୱର ବୋଲି ମତେ ମାନନ୍ତି । ସେ ନିଶ୍ଚଳ ଯୋଗରେ ଯୁକ୍ତ ହୋଇଯାଏ । ଏହି ବିଷୟରେ କିଛି ସନ୍ଦେହ ନାହିଁ ।

**ସୋଽହଂ ପ୍ରେରୟିତା ଦେବଃ ପରମାନନ୍ଦମାଶ୍ରିତାଃ ।**
**ନୃତ୍ୟାମି ଯୋ ସତତଂ ଯସ୍ତଦ୍‌ବେଦ ସ ଯୋଗବିତ୍ ।।୩୪**
**ଇତି ଗୁହ୍ୟତମଂ ଜ୍ଞାନଂ ସର୍ବବେଦେଷୁ ନିଷ୍ଠିତମ୍ ।**
**ପ୍ରସନ୍ନଚେତସେ ଦେୟଂ ଧାର୍ମିକା ଯାହିତାଗ୍ନୟେ ।।୩୫**

ମୁଁ ସମସ୍ତ ବସ୍ତୁର ପ୍ରେରକ ରୂପ ଅଟେ । ତଥା ମୁଁ ହିଁ ପରମାନନ୍ଦରୂପକୁ ଆଶ୍ରୟ କରି ନୃତ୍ୟ କରିଥାଏ । ଏହିପରି ମୋର ଦିବ୍ୟ ସ୍ୱରୂପକୁ ଯେଉଁ ଯୋଗୀ ଜାଣିଥାଏ, ସେ ହିଁ ଯୋଗବିଦ୍ୟାର ଜ୍ଞାନୀ ଅଟେ । ଏହିପରି ଅତ୍ୟନ୍ତ ଗୁହ୍ୟତମ ଜ୍ଞାନ ଯାହା ସମସ୍ତ ବେଦରେ ଏକପ୍ରକାରର ଅଛି, ମୁଁ ଆପଣମାନଙ୍କୁ ଶୁଣାଇଲି । ଏହାକୁ ପ୍ରସନ୍ନଚିତ୍ତ ଧାର୍ମିକ ତଥା ଯଜ୍ଞର ଅଧିକାରୀଙ୍କୁ ହିଁ ଆପଣ ସମସ୍ତେ ପ୍ରଦାନ କରିବେ ଅନ୍ୟକୁ ନୁହେଁ, ନହେଲେ ବିଦ୍ୟା ନିଷ୍ଫଳ ହୋଇଯିବ ।

ଇତି ଶ୍ରୀକୂର୍ମପୁରାଣେ ଉତ୍ତରାର୍ଦ୍ଧେ ଈଶ୍ୱରଗୀତାସୁ ଉପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଋଷିବ୍ୟାସସଂବାଦେ ଚତୁର୍ଥୋଽଧ୍ୟାୟଃ ।

---*---

# ପଞ୍ଚମ ଅଧ୍ୟାୟ

## ସ୍ତୁତିଯୋଗ

*(ଏହି ଅଧ୍ୟାୟରେ ବେଦଶାସ୍ତ୍ରାନୁସାର ଶିବ ମହାଦେବଙ୍କର ସ୍ତୁତି ଋଷିମାନେ କରିଛନ୍ତି । ତେଣୁ ଏହି ଅଧ୍ୟାୟକୁ ସ୍ତୁତିଯୋଗ ମଧ୍ୟ କୁହାଯାଏ ।)*

(ଶ୍ରୀବ୍ୟାସ ଉବାଚ)

**ଏତାବଦୁକ୍ତ୍ୱା ଭଗବାନ୍‌ଯୋଗିନାଂ ପରମେଶ୍ୱରଃ ।**
**ନନର୍ତ୍ତ ପରମଂ ଭାବମୈଶ୍ୱରଂ ସଂପ୍ରଦର୍ଶୟନ୍ ।।୧**
**ତଂ ତେଦଦୃଶୂରୀଶାନଂ ତେଜସାଂ ପରମଂ ନିଧିମ୍ ।**
**ନୃତ୍ୟମାନଂ ମହାଦେବଂ ବିଷ୍ଣୁନା ଗଗନେଽମଳେ ।।୨**

ଏହିପରି ଉପଦେଶ ଋଷିମାନଙ୍କୁ ଶୁଣାଇ ଯୋଗିମାନଙ୍କର ପରମେଶ୍ୱର ଶ୍ରୀଭଗବାନ୍ ପରମ ଐଶ୍ୱର୍ଯ୍ୟ ଭାବକୁ ପ୍ରଦର୍ଶିତ କରିବା ପାଇଁ ନୃତ୍ୟ କରିବାକୁ ଲାଗିଲେ । ତେଜପୁଞ୍ଜ ବିଷ୍ଣୁଙ୍କ ସହିତ ନିର୍ମଳ ଗଗନରେ ନୃତ୍ୟ କରିଥିବାର ମହାଦେବଙ୍କୁ ଋଷିମାନେ ଦେଖିଲେ ।

**ଯଂ ବିଦୁର୍ଯୋଗତତ୍ତ୍ୱଜ୍ଞା ଯୋଗିନୋ ଯତମାନସାଃ ।**
**ତମୀଶଂ ସର୍ବଭୂତାନାମାକାଶେ ଦଦୃଶୁଃ କିଳ ।।୩**
**ଯସ୍ୟ ମାୟାମୟଂ ସର୍ବଂ ଯେନେଦଂ ପ୍ରେର୍ଯ୍ୟତେ ଜଗତ୍ ।**
**ନୃତ୍ୟମାନଃ ସ୍ୱୟଂ ବିପ୍ରୈର୍ବିଶ୍ୱେଶଃ ଖଳୁ ଦୃଶ୍ୟତେ ।।୪**
**ଯତ୍ପାଦପଙ୍କଜଂ ସ୍ମୃତ୍ୱା ପୁରୁଷୋଽଜ୍ଞାନଜଂ ଭୟମ୍ ।**
**ଜହାତି ନୃତ୍ୟମାନନ୍ତଂ ଭୂତେଶଂ ଦଦୃଶୁଃ କିଳ ।।୫**

ସଂଯମୀ ଯୋଗତତ୍ତ୍ୱଜ୍ଞ ଯୋଗିମାନେ ଯେଉଁ ପରମତତ୍ତ୍ୱକୁ ସମ୍ପୂର୍ଣ୍ଣ ଭାବରେ ଜାଣନ୍ତି, ସେମାନେ ସମସ୍ତ ଭୂତରୁ ସ୍ୱାମୀଙ୍କୁ ଆକାଶରେ ଋଷିମାନେ ଦେଖିଲେ ଯେ ମାୟାବିଳାସୀ ଈଶ୍ୱର ମାୟା ହିଁ ଏହି ସମସ୍ତ ଜଗତରୂପୀ ଅନ୍ତର୍ଭୁକ୍ତ ରହି ପ୍ରେରିତ କରିଥାନ୍ତି । ସେ ହିଁ ବିଶ୍ୱର ସ୍ୱାମୀଙ୍କୁ ନୃତ୍ୟ କରୁଥିବାରୁ ସବୁ ବ୍ରାହ୍ମଣମାନେ ଦେଖିଲେ । ଯେଉଁ ପରମାତ୍ମାଙ୍କ ଚରଣକମଳକୁ ସ୍ମରଣ କରି ପୁରୁଷ ଅଜ୍ଞାନରୁ ଉତ୍ପନ୍ନ ହୋଇଥିବା ସମସ୍ତ ଭୟରୁ ମୁକ୍ତ ହୋଇଥାଏ । ସେହି ଭୂତେଶ ଜଗଦୀଶ୍ୱରଙ୍କୁ ନୃତ୍ୟ କରୁଥିବାର ସମସ୍ତେ ଦେଖିଲେ ।

କେଚିନ୍ନିଦ୍ରା ଜିତଶ୍ୱାସାଃ ଶାନ୍ତା ଭକ୍ତିସମନ୍ୱିତାଃ ।
ଜ୍ୟୋତିର୍ମୟଂ ପ୍ରପଶ୍ୟନ୍ତି ସ ଯୋଗୀ ଦୃଶ୍ୟତେ କିଳ ॥୬
ଯୋ ଅଜ୍ଞାନାନ୍ମୋଚୟେତ୍ କ୍ଷିପ୍ରଂ ପ୍ରସନ୍ନୋ ଭକ୍ତବତ୍ସଳଃ ।
ତମେବଂ ମୋଚନରୁଦ୍ରମାକାଶେ ଦଦୃଶୁଃ ପରମ୍ ॥୭
ସହସ୍ରଶିରସଂ ଦେବଂ ସହସ୍ରଚରଣାବୃତିମ୍ ।
ସହସ୍ରବାହୁଂ ଜଟିଳଂ ଚନ୍ଦ୍ରାର୍ଦ୍ଧକୃତଶେଖରମ୍ ॥୮

କେହି କେହି ସଂଯମୀ ପୁରୁଷ ନିଦ୍ରା ଓ ଶ୍ୱାସକୁ ଜୟ କରି ଶାନ୍ତ ଭକ୍ତିରେ ସମଚିତ୍ତ ହୋଇ ଯେଉଁ ସ୍ୱୟଂ ଜ୍ୟୋତିର୍ମୟ ପରମାତ୍ମାଙ୍କୁ ଦେଖନ୍ତି, ସେହି ଯୋଗୀସ୍ୱରୂପ ତତ୍ତ୍ୱରୂପ ଆକାଶରେ ପ୍ରଦର୍ଶିତ ହୋଇଥାଏ । ଯିଏ ଶୀଘ୍ର ହେଉଥିବା ସମସ୍ତ ଭୟକୁ ନିବୃତ୍ତ କରିଥାନ୍ତି, ସେହି ପ୍ରସନ୍ନ ଭକ୍ତବତ୍ସଳ ତଥା ସମସ୍ତ ବନ୍ଧନରୁ ମୁକ୍ତ କରିବା ପାଇଁ ସମର୍ଥ ଦେବଙ୍କୁ ଆକାଶରେ ଦେଖିଲେ ତାହାଙ୍କ ସ୍ୱରୂପ ସହସ୍ରଶିରସି ହଜାର ଚରଣଯୁକ୍ତ ତଥା ହଜାର ଭୁଜଦ୍ୱାରା ସୁଶୋଭିତ ଜଟାଯୁକ୍ତ ଥିଲେ ଏବଂ ତାଙ୍କ ମସ୍ତକରେ ଦ୍ୱିତୀୟଚନ୍ଦ୍ର ଶୋଭା ପାଉଥାଏ ।

ବସାନଂ ଚର୍ମବୈୟାଘ୍ରଂ ଶୂଳାସକ୍ତମହାକରମ୍ ।
ଦଣ୍ଡପାଣିଂ ତ୍ରୟୀ ନେତ୍ରଂ ସୂର୍ଯ୍ୟସୋମାଗ୍ନିଲୋଚନମ୍ ॥୯
ବ୍ରହ୍ମାଣ୍ଡତେଜସା ସ୍ୱେନ ସର୍ବମାବୃତ୍ୟଧିଷ୍ଠିତମ୍ ।
ଦ୍ରଂଷ୍ଟ୍ରା କରାଳଂ ଦୁର୍ଦ୍ଧର୍ଷଂ ସୂର୍ଯ୍ୟକୋଟିସମପ୍ରଭମ୍ ॥୧୦
ସୃଜନ୍ତମନଳଜ୍ୱାଳଂ ଦହନ୍ତମଖିଳଂ ଜଗତ୍ ।
ନୃତ୍ୟନ୍ତନ୍ଦଦୃଶୁର୍ଦେବଂ ବିଶ୍ୱକର୍ମାଣମୀଶ୍ୱରମ୍ ॥୧୧

ବ୍ୟାଘ୍ରର ଚର୍ମ ଧାରଣ କରି ଏକ ହାତରେ ବଡ଼ ତ୍ରିଶୂଳ, ଅନ୍ୟ ହାତରେ ଦଣ୍ଡ ଧରି ସୂର୍ଯ୍ୟ, ଚନ୍ଦ୍ର, ଅଗ୍ନିରୂପ ନେତ୍ରଯୁକ୍ତ ନିଜ ତେଜରେ ସମସ୍ତ ବ୍ରାହ୍ମଣକୁ ଆବୃତ କରି ଅଧିଷ୍ଠିତ । କରାଳ ଦୃଷ୍ଟିବାଲା ଦୁର୍ଦ୍ଧଷ କୋଟି କୋଟି ସୂର୍ଯ୍ୟଙ୍କ ସମାନ ପ୍ରଭାବବାଲା ମୁଖରୁ ଅଗ୍ନିର ଜ୍ୱାଳା ବାହାରୁଥିବ ତଥା ସମସ୍ତ ବିଶ୍ୱକୁ ଭସ୍ମ କରୁଥିବା ବିଶ୍ୱକୁ ରଚନା କରିପାରୁଥିବା ଜଗଦୀଶ୍ୱରଙ୍କୁ ନୃତ୍ୟ କରୁଥିବା ଋଷିମାନେ ଦେଖିଲେ ।

ମହାଦେବଂ ମହାଯୋଗଂ ଦେବାନାମପି ଦୈବତମ୍ ।
ପଶୂନାଂ ପତିମୀଶାନଂ ଆନନ୍ଦଂ ଜ୍ୟୋତିକ୍ଷୟମ୍ ॥୧୨
ପିନାକୀନଂ ବିଶାଳାକ୍ଷଂ ଭେଷଜଂ ଭବରୋଗିଣାମ୍ ।
କାଳାତ୍ମାନଂ କାଳକାଳଂ ଦେବଦେବଂ ମହେଶ୍ୱରମ୍ ॥୧୩

ଉମାପତିଂ ବିଶାଳାକ୍ଷଂ ଯୋଗାନନ୍ଦମୟଂ ପରମ୍ ।
ଜ୍ଞାନବୈରାଗ୍ୟନିଳୟଂ ଜ୍ଞାନଯୋଗଂ ସନାତନମ୍ ॥୧୪
ଶାଶ୍ୱତୈଶ୍ୱର୍ଯ୍ୟବିଭବଂ ଧର୍ମାଧାରଂ ଦୁରାସଦମ୍ ।
ମହେନ୍ଦ୍ରୋପେନ୍ଦ୍ର ନମିତଂ ମହର୍ଷିଗଣବନ୍ଦିତମ୍ ॥୧୫
ଯୋଗିନାଂ ହୃଦି ତିଷ୍ଠନ୍ତଂ ଯୋଗମାୟା ସମାବୃତମ୍ ।
କ୍ଷଣେନ ଜଗତୋ ଯୋନିଂ ନାରାୟଣମନାମୟମ୍ ॥୧୬
ଦୃଷ୍ଟ୍ୱା ତଦୈଶ୍ୱରଂ ରୂପଂ ରୁଦ୍ରଂ ନାରାୟଣାତ୍ମକମ୍ ।
କୃତାର୍ଥଂ ମେନିରେ ସନ୍ତଃ ସ୍ୱାତ୍ମାନଂ ବ୍ରହ୍ମବାଦିନଃ ॥୧୪

ସମସ୍ତ ଦେବମାନଙ୍କଠାରୁ ଶ୍ରେଷ୍ଠ ଦେବତାଙ୍କର ମଧ୍ୟ ଦେବତା ଜୀବଙ୍କର ସ୍ୱାମୀ, ଆନନ୍ଦସ୍ୱରୂପ, ନିର୍ବିକାର, ଜ୍ୟୋତିସ୍ୱରୂପ ଧନୁ ଧାରଣ କରି ବିଶାଳ ନେତ୍ରବାଲା ଜନ୍ମ-ମରଣରୂପ ରୋଗର ଭେଷଜସ୍ୱରୂପ, କାଳାତ୍ମକ ତଥା କାଳର ମଧ୍ୟ କାଳ ଦେବ ଦେବ ମହେଶ୍ୱର, ଈଶାନ, ଉମାପତି, ବିଶାଳ ଐଶ୍ୱର୍ଯ୍ୟ ସମ୍ପନ୍ନ ଯୋଗାନନ୍ଦମୟ ଜ୍ଞାନର ଆଧାର । ଜ୍ଞାନଯୋଗରୁ ବେଦ୍ୟ ସନାତନ, ନିତ୍ୟ ଐଶ୍ୱର୍ଯ୍ୟଯୁକ୍ତ ବିଭୁ ସମସ୍ତ ଧର୍ମର ଆଧାର ତଥା ଦୁଃଖକୁ ଜାଣିବାଯୋଗ୍ୟ ଇନ୍ଦ୍ର, ବିଷ୍ଣୁ ଆଦିଙ୍କୁ ନମସ୍ୟ ମହର୍ଷିଙ୍କର ବନ୍ଦନୀୟ, ଯୋଗମାୟାଯୁକ୍ତ ଏବଂ ଯୋଗୀମାନଙ୍କ ହୃଦୟରେ ସର୍ବଦା ଜ୍ୟୋତିସ୍ୱରୂପ ବିରାଜିତ ତଥା ଜଗତର କାରଣ ଭଗବାନ୍ ଶ୍ରୀଶଙ୍କର ଏବଂ ବ୍ୟାଧିଶୂନ୍ୟ, କ୍ଷଣମାତ୍ରକେ ଈଶ୍ୱରଙ୍କ ମହ ଐକ୍ୟଭାବକୁ ନାରାୟଣସ୍ୱରୂପ ଈଶ୍ୱରଙ୍କୁ ସ୍ୱୟଂ ବ୍ରହ୍ମବାଦିମାନେ ଦେଖିଲେ । ଏହିପରି ନାରାୟଣାତ୍ମକ ଈଶ୍ୱରୀୟ ରୂପବାଲାଙ୍କୁ ଦେଖି ବ୍ରହ୍ମବାଦୀ ମୁନିମାନେ ନିଜକୁ କୃତାର୍ଥ ମନେ କଲେ ।

ସନତ୍କୁମାରଃ ସନକୋ ଭୃଗୁଷ୍ଚ ସନାତନଶ୍ଚୈବ ସନନ୍ଦନଷ୍ଚ ।
ରେଭ୍ୟୋଽଙ୍ଗିରା ବାମଦେବୋଽଥ ଶୁକୋ ମହର୍ଷିରତ୍ରିଃ କପିଳୋ ମରୀଚିଃ ॥୧୮
ଧ୍ୟାତ୍ୱା ହୃଦିସ୍ଥଂ ପ୍ରଣିପତ୍ୟ ମୂର୍ଧ୍ନି କୃତ୍ୱାଞ୍ଜଳିଂ ସ୍ୱେଷୁଶିରଃ ସୁଭୂୟଃ ॥୧୯
ଓଁକାରମୁଚ୍ଚାର୍ଯ୍ୟ ବିଲୋକ୍ୟ ଦେବମନ୍ତଃ ଶରୀରଂ ନିହିତଂ ଗୁହାୟାମ୍ ।
ସମସ୍ତୁବନ୍ ବ୍ରହ୍ମବଚୋଭିରାନନ୍ଦପୂର୍ଣ୍ଣାହିତମାନସା ବୈ ॥୨୦

ସନତ୍କୁମାର, ସନକ, ଭୃଗୁ, ସନାତନ, ସନନ୍ଦନ, ରେଭ୍ୟ, ଅଙ୍ଗିରା, ବାମଦେବ, ଶୁକ୍ର, ମହର୍ଷି ଅତ୍ରି, କପିଳ, ମରୀଚ ଆଦି ଋଷିମାନେ ଜଗତର ସ୍ୱାମୀ ଶ୍ରୀଶଙ୍କରଙ୍କୁ ଏବଂ ତାଙ୍କ ବାମଭାଗରେ ବିରାଜିତା ନାରାୟଣଙ୍କୁ ଦର୍ଶନ କରି ତଥା

ହୃଦୟରେ ଧ୍ୟାନ କରି ଦୁଇ ହାତଯୋଡ଼ି ଶିର ପ୍ରଣତି ପୂର୍ବକ ନମସ୍କାର କଲେ । ଓଁକାର ଉଚ୍ଚାରଣ କରି ହୃଦୟରେ ତଥା ଅନ୍ତଃଶରୀରରେ ବୁଦ୍ଧିରୂପୀ ଗୁହାରେ ଲୁକ୍କାୟିତ ହୋଇଥିବା ତତ୍ତ୍ୱରୂପ ପରମାତ୍ମାଙ୍କୁ ସାକ୍ଷାତ୍ କରି ଆନନ୍ଦିତ ମନରେ ଋଷିମାନେ ବେଦମୟ ବଚନ ସ୍ତୁତି କରିବା ଆରମ୍ଭ କଲେ ।

॥ ମୁନୟଃ ଉଚୁଃ ॥

**ତ୍ୱାମେକମୀଶଂ ପୁରୁଷଂ ପୁରାଣଂ ପ୍ରାଣେଶ୍ୱରଂ ରୁଦ୍ରମନନ୍ତଯୋଗମ୍ ।**
**ନମାମି ସର୍ବେ ହୃଦି ସନ୍ନିବିଷ୍ଟଂ ପ୍ରଚେତସଂ ବ୍ରହ୍ମମୟଂ ପବିତ୍ରମ୍ ॥୨୧**
**ପଶ୍ୟନ୍ତି ତ୍ୱାଂ ମୁନୟୋ ବ୍ରହ୍ମଯୋନିଂ ଦାନ୍ତାଃ ଶାନ୍ତାଃ ବିମଳଂ ରୁକ୍ମବର୍ଣ୍ଣମ୍ ।**
**ଧ୍ୟାତ୍ୱାତ୍ମସ୍ଥପ୍ରଚଳଂ ସ୍ୱେ ଶରୀରେ କବିଂ ପରେଭ୍ୟଃ ପରମଂ ପରଞ୍ଚ ॥୨୨**

ସମସ୍ତ ମୁନିମାନେ ଯେଉଁ ପ୍ରକାରର ସ୍ତୁତି କଲେ ତାର ନିରୂପଣ ଏହା ପରଠାରୁ ଅଧ୍ୟାୟର ସମାପ୍ତି ପର୍ଯ୍ୟନ୍ତ କୁହାଯାଇଛି । ଏହାର ଆରମ୍ଭ ଯେ ମୁନିମାନେ ପରଂବ୍ରହ୍ମସ୍ୱରୂପ ଶ୍ରୀଶଙ୍କରଙ୍କୁ ସମ୍ବୋଧିତ କରି କହିଲେ ହେ ଭଗବନ୍ ଆପଣ ଏକ ଈଶ୍ୱର, ପୁରାଣପୁରୁଷ ପ୍ରାଣର ଈଶ୍ୱର, ରୁଦ୍ର, ଅନନ୍ତଯୋଗ ଏପରି ନାମରେ ବେଦରେ ବିଖ୍ୟାତ ହୋଇଛନ୍ତି ତଥା ସମସ୍ତଙ୍କ ହୃଦୟରେ ସନ୍ନିବିଷ୍ଟ ରହିଛନ୍ତି ଓ ବ୍ରହ୍ମମୟ ପବିତ୍ର ଜ୍ଞାନ ଭାବରେ ଅନୁଭୂତ ହେଉଛନ୍ତି । ଆପଣଙ୍କୁ ଆମେ ସମସ୍ତେ ନମସ୍କାର କରୁଅଛୁ । ଇନ୍ଦ୍ରିୟଗୁଡ଼ିକୁ ଦମନ କରିଥିବା ଶାନ୍ତ ମୁନିଗଣ ଆପଣଙ୍କ ତପ୍ତବର୍ଣ୍ଣ ସହ ସମାନ ବିମଳ ସ୍ୱରୂପ ତଥା ବେଦର କାରଣସ୍ୱରୂପକୁ ଦେଖୁଥାନ୍ତି । ଆପଣ ସମସ୍ତ ବସ୍ତୁରେ କ୍ରିୟା ପ୍ରଦାନ କରନ୍ତି । କବିସ୍ୱରୂପ ଅଟନ୍ତି ଏବଂ ବ୍ରହ୍ମବିଷ୍ଣୁ ଆଦି ସ୍ୱରୂପାତ୍ମକ ରୂପରେ ନିଜ ଶରୀରରେ ଧ୍ୟାନସ୍ଥ ହୋଇଥାଆନ୍ତି ।

**ତ୍ୱତ୍ତଃ ପ୍ରସୂତା ଜଗତଃ ପ୍ରସୂତିଃ ସର୍ବାନୁଭୂସ୍ତ୍ୱଂ ପରମାଣୁଭୂତଃ ।**
**ଅଣୋରଣୀୟାନ୍ମହତୋ ମହୀୟାଂସ୍ତ୍ୱାମେବ ସର୍ବଂ ପ୍ରବଦନ୍ତି ସନ୍ତଃ ॥୨୩**
**ହିରଣ୍ୟଗର୍ଭୋ ଜଗଦନ୍ତରାତ୍ମା ତ୍ୱତ୍ତୋଽସ୍ତି ଜାତଃ ପୁରୁଷଃ ପୁରାଣଃ ।**
**ସଞ୍ଜାୟମାନୋ ଭବତେ ନିଃସୃଷ୍ଟୋ ଯଥା ବିଧାନଂ ସକଳଂ ସ ସଦ୍ୟଃ ॥୨୪**

ଆପଣଙ୍କ ପାଖରୁ ଜଗତର ଉତ୍ପତ୍ତି ହୋଇଥାଏ । ଆପଣ ହିଁ ସମସ୍ତ ବସ୍ତୁର ଅନୁଭାବକ ତଥା ପରମାଣୁସ୍ୱରୂପ ଅଟନ୍ତି । ଆପଣଙ୍କୁ ସାଧୁସନ୍ଥମାନେ କ୍ଷୁଦ୍ରରୁ କ୍ଷୁଦ୍ରତର ଏବଂ ବୃହତ୍‌ରୁ ବୃହତ୍ତମ ଭାବରେ ଜାଣନ୍ତି ଏବଂ ସମସ୍ତ ବିଶ୍ୱ ଆପଣଙ୍କ ସ୍ୱରୂପ ରୂପରେ ପ୍ରତିପାଦନ କରନ୍ତି । ଜଗତର ଅନ୍ତରାତ୍ମା ହିରଣ୍ୟଗର୍ଭ ଯାହାଙ୍କୁ ପୁରାଣ ମଧ୍ୟ କହିଥାନ୍ତି, ସେ ଆପଣଙ୍କ ପାଖରୁ ଉତ୍ପନ୍ନ ହୋଇଥାନ୍ତି ତଥା

ଉତ୍ପନ୍ନ ହୋଇ ଆପଣଙ୍କ ଆଜ୍ଞା ଅନୁସାରେ ସମସ୍ତ ବସ୍ତୁର ରଚନାରେ ପ୍ରବୃତ୍ତ ହୁଅନ୍ତି ।

ତ୍ୱତ୍ତୋହି ବେଦା ସକଳାଃ ପ୍ରସୂତାସ୍ତ୍ୱୟେବାନ୍ତେ ସଂସ୍ଥିତିଂ ତେ ଲଭନ୍ତେ ।
ପଶ୍ୟାମସ୍ତ୍ୱାଂଜଗତୋ ହେତୁଭୂତଂ ନୃତ୍ୟନ୍ତଂ ସ୍ୱେ ହୃଦୟେ ସନ୍ନିବିଷ୍ଟମ୍ ॥୨୫
ତ୍ୱୟୈବେଦଂ ଭ୍ରାମ୍ୟତେ ବ୍ରହ୍ମଚକ୍ରଂ ମାୟାବୀତ୍ୱଂ ଜଗତାମେକନାଥଃ ।
ନମାମସ୍ତ୍ୱାଂ ଶରଣଂ ସପ୍ରପନ୍ନା ଯୋଗାତ୍ମାନଂ ନୃତ୍ୟନ୍ତଂ ଦିବ୍ୟନୃତ୍ୟମ୍ ॥୨୬

ଆପଣଙ୍କ ପାଖରୁ ସମସ୍ତ ବେଦ ଉତ୍ପନ୍ନ ହୁଅନ୍ତି ଏବଂ ପ୍ରଳୟ କାଳରେ ଆପଣଙ୍କ ମଧ୍ୟରେ ବେଦ ସନ୍ନିବିଷ୍ଟ ହୋଇଥାଏ । ନିଜେ ହୃଦୟ ସ୍ଥାନରେ ରହି ନୃତ୍ୟ କରୁଥିବା ଆପଣଙ୍କୁ ଆମେ ଜଗତର କାରଣ ବୋଲି ବୁଝିଥାଉ । ଏହିସବୁ ପ୍ରତ୍ୟକ୍ଷବର୍ତ୍ତି ବ୍ରହ୍ମଚକ୍ରଦ୍ୱାରା ଚାଲୁ ରହିଥାଏ । ଆପଣ ହିଁ ଏହି ମାୟାକାର୍ଯ୍ୟ ଜଗତର ସ୍ୱାମୀ ଓ ମାୟାପତି ଅଟନ୍ତି । ଦିବ୍ୟ ନୃତ୍ୟ କରୁଥିବା ଯୋଗାତ୍ମା ଅଟନ୍ତି । ଆପଣଙ୍କୁ ଆପେ ନମସ୍କାର କରୁଛୁ । ଆମେ ସବୁ ଆପଣଙ୍କ ଶରଣାଗତ ଅଟୁ ।

ପଶ୍ୟାମସ୍ତ୍ୱାଂ ପରମାକାଶମଧ୍ୟେ ନୃତ୍ୟନ୍ତଂ ମହିମାନଂ ସ୍ମରାମଃ ।
ସର୍ବାତ୍ମାନଂ ବହୁଧା ସନ୍ନିବିଷ୍ଟଂ ବ୍ରହ୍ମାନନ୍ଦମନୁଭୂୟାନୁଭୂୟଃ ॥୨୭
ଓଁକାରସ୍ତେ ବାଚକୋ ମୁକ୍ତିବୀଜଂ ତ୍ୱମକ୍ଷରଂ ପ୍ରକୃତୌ ଗୂଢରୂପମ୍ ।
ତତ୍ତ୍ୱାଂ ସତ୍ୟଂ ପ୍ରବଦନ୍ତୀହ ସନ୍ତଃ ସ୍ୱୟଂପ୍ରଭଂ ଭବତୋ ଯତପ୍ରଭାବମ୍ ॥୨୮

ହେ ଭଗବନ୍ ବ୍ରହ୍ମାନନ୍ଦର ଅନୁଭବ ବାରମ୍ବାର କରି ତଥା ଅପୂର୍ବ ମହିମା ଶ୍ରବଣ କରି ଆମେ ସବୁ ସ୍ୱରୂପକୁ ଦେଖୁଅଛୁ । ମୁକ୍ତିବୀଜ ଓଁକାର ଆପଣଙ୍କ ବାଚକ ଅଟେ । ‘‘ତସ୍ୟ ବାଚକଃ ପ୍ରଣବଃ’’ (ଯା.ଦ. ୧/୨୭) । ଆପଣ ଅକ୍ଷର ଅର୍ଥାତ୍ ଅବିନାଶୀ ଅଟନ୍ତି ଏବଂ ପ୍ରକୃତି ମଧ୍ୟରେ ଲୁଚି ରହିଥାଅ । ସନ୍ତ ଲୋକମାନେ ଏହି ସତ୍ୟବଚନ କହିଥାନ୍ତି ଯେ ଆପଣଙ୍କର ପ୍ରଭାବ ସ୍ୱୟଂପ୍ରଭ ଅଟେ ଅର୍ଥାତ୍ ପୂର୍ଣ୍ଣ ସ୍ୱତନ୍ତ୍ର କେବଳ ଆପଣ ଅଟନ୍ତି ।

ସ୍ତୁବନ୍ତି ତ୍ୱାଂ ସତତଂ ସର୍ବବେଦା ନମନ୍ତି ତ୍ୱାମୃଷୟଃ କ୍ଷୀଣଦୋଷାଃ ।
ଶାନ୍ତାତ୍ମନଃ ସତ୍ୟସନ୍ଧଂ ବରିଷ୍ଠଂ ବିଶନ୍ତି ତ୍ୱାଂ ଯତୟୋ ବ୍ରହ୍ମନିଷ୍ଠାଃ ॥୨୯
ଭୂବୋ ନାଶୋ ନାଦିମାନ୍ୱିଶ୍ୱରୂପୋ ବ୍ରହ୍ମା ବିଷ୍ଣୁଃ ପରମେଷ୍ଠୀବରିଷ୍ଠଃ ।
ସ୍ୱାତ୍ମାନନ୍ଦମନୁଭୂୟ ବିଶନ୍ତେ ସ୍ୱୟଂ ଜ୍ୟୋତିରଚଳା ନିତ୍ୟମୁକ୍ତା ॥୩୦

ସମସ୍ତ ବେଦ ଆପଣଙ୍କୁ ହିଁ ସ୍ତୁତି କରନ୍ତି ତଥା କ୍ଷୀଣଦୋଷଯୁକ୍ତ ଋଷିଗଣ ମଧ୍ୟ ଶାନ୍ତ ମନଶାଳି ହୋଇ ମଧ୍ୟ ଆପଣଙ୍କୁ ନମସ୍କାର କରନ୍ତି । ବ୍ରହ୍ମନିଷ୍ଠ ଯତିଗଣ

ମଧ୍ୟ ସତ୍ୟସନ୍ଧ ସର୍ବଶ୍ରେଷ୍ଠ ଆପଣଙ୍କ ସ୍ୱରୂପରେ ହିଁ ପ୍ରବେଶ କରିଥାନ୍ତି । ଏହି ବିଷୟରେ ଶ୍ରୁତି ପ୍ରମାଣ ମଧ୍ୟ ରହିଛି । ''ପରେଣ ନାକଂ ନିହିତଂ ଗୁହାୟାଂ ବିଭ୍ରାଜତେ ଯଦ୍ ଯତୟୋ ବିଶନ୍ତି'' (କୈ.ଉ. ୧/୭) । ଶେଷ ସମୟରେ ଭୂମି ଆଦିର ନାଶ ହୋଇଯାଏ ତଥା ସମସ୍ତ ବିଶ୍ୱ ବ୍ରହ୍ମା ବିଷ୍ଣୁ ପରମେଷ୍ଠୀ ଆଦି ଦେବତାଗଣ ମଧ୍ୟ ଅନ୍ତ ସମୟରେ ସ୍ୱାତ୍ମାନନ୍ଦର ଅନୁଭୂତ କରି ଅଚଳ ଭାବକୁ ପ୍ରାପ୍ତ ହୋଇ ସ୍ୱୟଂଜ୍ୟୋତି ସ୍ୱରୂପରେ ଲୀନ ହୋଇ ନିତ୍ୟ ହୋଇଯାଇଥାଏ ।

**ଏକୋ ରୁଦ୍ରସ୍ତ୍ୱଂ କରୋଷୀହ ବିଶ୍ୱଂ ତ୍ୱଂ ପାଳୟସ୍ୟଖିଳଂ ବିଶ୍ୱରୂପମ୍ ।**
**ତ୍ୱାମେବାନ୍ତେ ନିଳୟଂ ବିନ୍ଦତୀଦଂ ନମାମସ୍ତ୍ୱାଂ ଶରଣଂ ସଂପ୍ରପନ୍ନାଃ ॥୩୧**
**ଏକୋ ବେଦୋ ବହୁଶାଖୋ ହ୍ୟନନ୍ତସ୍ତ୍ୱାମେବୈକଂ ବୋଧ ଯସ୍ୟେକରୂପମ୍ ।**
**ବନ୍ଦ୍ୟଂ ତ୍ୱାଂ ଯେ ଶରଣଂ ସଂପ୍ରପନ୍ନା ମାୟାମେତାଂ ତେ ତରନ୍ତୀହ ବିପ୍ରାଃ ॥ ୩୨**

ଆପଣ ଏକ ହୋଇ ମଧ୍ୟ ଏହି ବିଶ୍ୱକୁ ଉତ୍ପନ୍ନ କରିଥାନ୍ତି ତଥା ବିଶ୍ୱରୂପ ଭାବରେ ପାଳନ କରନ୍ତି ଏବଂ ଅନ୍ତରେ ଆପଣଙ୍କଠାରେ ଏହି ସମସ୍ତ ବିଶ୍ୱ ଲୟପ୍ରାପ୍ତ ହୋଇଥାଏ । ଏହିପରି ବିଦ୍ୱାନ୍ ଲୋକ ଜାଣନ୍ତି ସମସ୍ତ ବିଶ୍ୱବାସୀଙ୍କୁ ପାଳନ କରନ୍ତି ଏବଂ ଅନ୍ତରେ ଆପଣଙ୍କଠାରେ ଏହି ସମସ୍ତ ବିଶ୍ୱ ଲୟ ମଧ୍ୟ ପ୍ରାପ୍ତ ହୋଇଥାଏ । ଏହିପ୍ରକାର ବିଦ୍ୱାନ୍ ଲୋକ ଜାଣନ୍ତି । ଏହି ସ୍ୱରୂପକୁ ଆମେ ଆପଣଙ୍କ ଶରଣରେ ପ୍ରାପ୍ତ ହୋଇଥାଉ । ଅନନ୍ତଶାଖାସ୍ୱରୂପ ବେଦ ମଧ୍ୟ ଆପଣଙ୍କ ଏକରୂପକୁ ବୋଧନ କରିଥାଏ । ଯେଉଁ ବ୍ରାହ୍ମଣଗଣ ବନ୍ଦନୀୟ ଆପଣଙ୍କ ଶରଣକୁ ଆସନ୍ତି, ସେମାନେ ଏହି ସଂସାରର କାରଣଭୂତ ମାୟାକୁ ତରି ଯାଆନ୍ତି ।

**ତ୍ୱାମେକମାହୁଃ କବିମେକରୁଦ୍ରଂ ବ୍ରହ୍ମ ଗୃଣନ୍ତଂ ହରିମଗ୍ନିମୀଶମ୍ ।**
**ରୁଦ୍ରଂ ନିତ୍ୟମନିଳଂ ଚେକିତାନଂ ଧାତାରମାଦିତ୍ୟମନେକରୂପମ୍ ॥୩୩**
**ତ୍ୱମକ୍ଷରଂ ପରମଂ ବେଦିତବ୍ୟଂ ତ୍ୱମସ୍ୟ ବିଶ୍ୱସ୍ୟ ପରଂ ନିଧାନମ୍ ।**
**ତ୍ୱମବ୍ୟୟଃ ଶାଶ୍ୱତଧର୍ମଗୋପ୍ତା ସନାତନସ୍ତ୍ୱଂ ପୁରୁଷୋତ୍ତମୋଽସି ॥୩୪**

ବିଦ୍ୱାନ୍ ଲୋକ ଆପଣଙ୍କ କବି ରୁଦ୍ର, ବ୍ରହ୍ମା, ହରି, ଅଗ୍ନି, ଈଶ, ରୁଦ୍ର, ନିତ୍ୟ, ଅନିତ୍ୟ, ଚେକିତାନ, ଧାତା, ଆଦିତ୍ୟ ଆଦି ନାମରେ ଅନେକ ରୂପ କରିଥାନ୍ତି। ଅକ୍ଷରରୂପରୁ ଆପଣ ହିଁ ଜଣାପଡନ୍ତି । ଆପଣ ହିଁ ଏହି ବିଶ୍ୱର ପରମନିଧାନ ଅଟନ୍ତି । ଆପଣ ବିକାରଶୂନ୍ୟ ଅଟନ୍ତି ଏବଂ ସନାତନ ଧର୍ମର ରକ୍ଷକ ଅଟନ୍ତି । ଆପଣ ସ୍ୱୟଂ ସନାତନ ଏବଂ ପୁରୁଷୋତ୍ତମ ମଧ୍ୟ ଅଟନ୍ତି ।

**ତ୍ୱମେବ ବିଷ୍ଣୁଶ୍ଚତୁରାନନସ୍ତ୍ୱଂ ତ୍ୱମେବ ରୁଦ୍ରୋ ଭଗବାନପୀଶଃ ।**
**ତ୍ୱଂ ବିଶ୍ୱନାଥଃ ପ୍ରକୃତିଃ ପ୍ରତିଷ୍ଠା ସର୍ବେଶ୍ୱରସ୍ତ୍ୱଂ ପରମେଶ୍ୱରୋଽସି ॥୩୫**

**ତ୍ୱାମେକମାହୁଃ ପୁରୁଷଂ ପୁରାଣମାଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍ ।**
**ଚିନ୍ମାତ୍ରମବ୍ୟକ୍ତମନନ୍ତରୂପଂ ଖଂ ବ୍ରହ୍ମଶୂନ୍ୟଂ ପ୍ରକୃତିର୍ନିର୍ଗୁଣଷ୍ଟ ।।୩୬**

ହେ ଭଗବାନ୍ ! ଆପଣ ହିଁ ବ୍ରହ୍ମା, ବିଷ୍ଣୁ, ଏବଂ ରୁଦ୍ରରୂପ ଅଟନ୍ତି । ଆପଣ ବିଶ୍ୱର ସ୍ୱାମୀ ଅଟନ୍ତି ତଥା ସମସ୍ତଙ୍କର ମୂଳକାରଣ ସର୍ବେଶ୍ୱର ଏବଂ ପରମେଶ୍ୱର ମଧ୍ୟ ଅଟନ୍ତି । ଆପଣଙ୍କୁ ହିଁ ସର୍ବବେଦ ପୁରାଣ, ପୁରୁଷ, ଆଦିତ୍ୟବର୍ଣ୍ଣବାଲା ତଥା ତମଠାରୁ ଶ୍ରେଷ୍ଠ ଚିନ୍ମାତ୍ର, ଅବ୍ୟକ୍ତ, ଅନନ୍ତରୂପ ଖଂ ବ୍ରହ୍ମ ପ୍ରକୃତି ଏବଂ ନିର୍ଗୁଣ ସ୍ୱରୂପ ଅଟନ୍ତି ।

**ଯଦନ୍ତରା ସର୍ବମିଦଂ ବିଭାତି ଯଦବ୍ୟୟଂ ନିର୍ମଳମେକରୂପମ୍ ।**
**କିମପ୍ୟଚିନ୍ତ୍ୟଂ ତବ ତତ୍ସ୍ୱରୂପଂ ତଦନ୍ତରା ଯତ୍ପ୍ରତିଭାତି ତତ୍ତ୍ୱମ୍ ।।୩୭**
**ଯୋଗେଶ୍ୱରଂ ଭଦ୍ରମନନ୍ତଶକ୍ତିପରାୟଣଂ ବ୍ରହ୍ମ ତନୁଂ ପୁରାଣମ୍ ।**
**ନମାମ ସର୍ବେ ଶରଣାର୍ଥିନସ୍ତ୍ୱାଂ ପ୍ରସୀଦ ଭୂତାଧିପତେ ମହେଶ ।। ୩୮**

ହେ ମହେଶ ! ଯାହାଙ୍କ ମଧ୍ୟରେ ଏହି ନାମରୂପାତ୍ମକ ଜଗତ୍ ପ୍ରକାଶିତ ହୋଇଥାଏ । ଯିଏ ନିର୍ବିକାର, ନିର୍ମଳ, ଏକରୂପବାଲା, ଆପଣଙ୍କର କୌଣସି ଅଚିନ୍ତ୍ୟ ସ୍ୱରୂପ ଅଟେ । ଏହା ମଧ୍ୟରେ ହିଁ ସମସ୍ତ ତତ୍ତ୍ୱର ସ୍ଥିତି ରହିଥାଏ । ହେ ସମସ୍ତ ଭୂତର ସ୍ୱାମୀ ! ହେ ଯୋଗିଙ୍କର ଈଶ୍ୱର ! କଲ୍ୟାଣ ଗୁଣବିଶିଷ୍ଟ ଅନନ୍ତ ଶକ୍ତିସମ୍ପନ୍ନ, ପରମ ଉତ୍କୃଷ୍ଟ ସ୍ଥାନବାଲା, ବୃହତ୍ ଶରୀରବାଲା ତଥା ସବୁଠାରୁ ପୁରାତନ ସ୍ୱରୂପ ଆପଣ ଆମ ସମସ୍ତ ଶରଣାର୍ଥୀଙ୍କର ନମସ୍କାର ଗ୍ରହଣ କରନ୍ତୁ । ଆପଣ ଆମମାନଙ୍କ ଉପରେ ପ୍ରସନ୍ନ ହୁଅନ୍ତୁ ।

**ତ୍ୱଦ୍ଧସ୍ତପାଦପଦ୍ମସ୍ମରଣାଦଶେଷସଂସାରବୀଜଂ ନିଳୟଂ ପ୍ରୟାତି ।**
**ମନୋ ନିୟମ୍ୟ ପ୍ରଣିଧାୟ କାୟଂ ପ୍ରସାଦୟାମୋ ବୟମେକମୀଶମ୍ ।।୩୯**
**ନମୋ ଭବାୟାଥ ଭବୋଦ୍ଭବାୟ କାଳାୟ ସର୍ବାୟ ହରାୟ ତୁଭ୍ୟମ୍ ।**
**ନମୋଽସ୍ତୁ ରୁଦ୍ରାୟ କପର୍ଦ୍ଦିନେ ତେ ନମୋଽଗ୍ନୟେ ଦେବ ନମଃ ଶିବାୟ ।।୪୦**

ମନକୁ ନିୟମନ କରି ତଥା ଶରୀରର ପୃଷ୍ଠଭାଗକୁ ସମରୂପରେ କରି ଆପଣଙ୍କ ଚରଣକମଳରେ ସ୍ମରଣଦ୍ୱାରା ସମସ୍ତ ସଂସାରର ଅନର୍ଥ ରୂପାତ୍ମକ ବୀଜ ନାଶଭାବକୁ ପ୍ରାପ୍ତ ହୋଇ ଯାଆନ୍ତି । ହେ ସ୍ୱାମିନ୍ ! ଆମେ ସମସ୍ତେ ଆପଣଙ୍କୁ ପ୍ରସନ୍ନ କରୁଛୁ । ହେ ଜଗତର କାରଣସ୍ୱରୂପ, ବିଶ୍ୱର ଉତ୍ପାଦକ, କାଳରୂପ ସର୍ବହର ରୁଦ୍ର, କପର୍ଦୀ, ଅଗ୍ନି, ଶିବ ଆଦି ନାମଧାରୀ ଆପଣଙ୍କୁ ଆମେ ସବୁ ବାରମ୍ବାର ନମସ୍କାର କରୁଛୁ ।

ତତଃ ସ ଭଗବାନ୍ ପ୍ରୀତଃ କପର୍ଦ୍ଦୀ ବୃଷବାହନଃ ।
ସଂହୃତ୍ୟ ପରମଂ ରୂପଂ ପ୍ରକୃତିସ୍ଥୋଽଭବଦ୍‌ଭବଃ ॥ ୪୧
ତେ ଭବଂ ଭୂତଂ ଭବ୍ୟେଶଂ ପୂର୍ବବତ୍ସମବସ୍ଥିତମ୍ ।
ଦୃଷ୍ଟ୍ୱା ନାରାୟଣଂ ଦେବଂ ବିସ୍ମିତଂ ବାକ୍ୟମବ୍ରୁବନ୍ ॥ ୪୨

ଏହିପରି ମୁନିମାନଙ୍କ ସ୍ତୁତିରେ ପ୍ରସନ୍ନ ହୋଇ ଭଗବାନ୍ ଶଙ୍କର ନିଜର ଦିବ୍ୟରୂପକୁ ଛାଡ଼ିକରି ପ୍ରକୃତିସ୍ଥ ହେଲେ । ଏହି ମୁନିମାନେ ଭୂତ, ଭବିଷ୍ୟତ, ବର୍ତ୍ତମାନ ତିନି କାଳର ସ୍ୱାମୀ ଶ୍ରୀଶଙ୍କରଙ୍କର ନାରାୟଣଙ୍କ ସହିତ ପୂର୍ବ ସ୍ଥାନରେ ପୂର୍ବପରି ଥିବାର ଦେଖିକରି ବିସ୍ମିତ ବଚନ କହିଲେ-

ଭଗବାନ୍ ଭୂତଭବ୍ୟେଶ ଗୋ-ବୃଷାଙ୍କିତଶାସନ ।
ଦୃଷ୍ଟ୍ୱା ତେ ପରମଂ ରୂପଂ ନିବୃତ୍ତାଃ ସ୍ମ ସନାତନଃ ॥୪୩
ଭବତ୍‌ପ୍ରସାଦାଦମଳେ ପରସ୍ମିନ୍ ପରମେଶ୍ୱରେ ।
ଅସ୍ମାକଂ ଜାୟତେ ଭକ୍ତିସ୍ତ୍ୱୟେବାବ୍ୟଭିଚାରିଣୀ ॥୪୪
ଇଦାନୀଂ ଶ୍ରୋତୁମିଚ୍ଛାମୋ ମାହାତ୍ମ୍ୟଂ ତବ ଶଙ୍କର ।
ଭୂୟୋଽପି ଚୈବ ଯନ୍ନିତ୍ୟଂ ଯାଥାତ୍ମ୍ୟଂ ପରମେଷ୍ଠିନଃ ॥୪୫
ସ ତେଷାଂ ବାକ୍ୟମାକର୍ଣ୍ଣ୍ୟ ଯୋଗିନାଂ ଯୋଗସିଦ୍ଧିଦଃ ।
ପ୍ରାହ ଗମ୍ଭୀରୟା ବାଚା ସମାଲୋକ୍ୟ ଚ ମାଧବମ୍ ॥୪୬

ହେ ଭଗବାନ୍ ଆପଣ ପରମ ଅଦ୍ଭୁତ ସ୍ୱରୂପର ଦର୍ଶନ କରି ଆମ୍ଭେ ସମସ୍ତେ ପରମ ସୁଖ ପ୍ରାପ୍ତ ହେଲୁ । ହେ ଭୂତ ଭବ୍ୟର ସ୍ୱାମୀ ତଥା ଗୋବୃଷରେ ଅଙ୍କିତ ଶାସନ ଏବଂ ସନାତନ ରୂପ ଆପଣଙ୍କ ପ୍ରସାଦରୁ ଆପଣ ନିର୍ମଳ ପରମ ପରମେଶ୍ୱରଙ୍କ ବିଷୟରେ ଆମମାନଙ୍କ ନିତ୍ୟ ଭକ୍ତି ରହିଥିବ । ଏବେ ଆମ୍ଭେମାନେ ଆପଣଙ୍କ ମାହାତ୍ମ୍ୟର ଯେଉଁ ପରମ ସ୍ୱରୂପରେ ରହିଥାଏ ତଥା ନିତ୍ୟ ରୂପରେ କୁହାଯାଇଥାଏ ତାହା ମୁନିମାନେ ଅଭିଳାଷ କରିଥାନ୍ତି । କୃପା କରି ଏହା ଆମମାନଙ୍କୁ ଶୁଣାନ୍ତୁ । ଏହି ପ୍ରକାର ମୁନିମାନଙ୍କର ବଚନକୁ ଶୁଣି ଯୋଗିମାନଙ୍କୁ ଅନେକ ପ୍ରକାରର ସିଦ୍ଧି ଦେଉଥିବା ଶ୍ରୀଶଙ୍କର ଶ୍ରୀମାଧବଙ୍କୁ ଚାହିଁଲେ ଓ ଗମ୍ଭୀର ବାଣୀରେ କହିଲେ ।

ଇତି ଶ୍ରୀକୂର୍ମପୁରାଣେ ଉତ୍ତରାର୍ଦ୍ଧେ ଈଶ୍ୱରଗୀତାସୁ ଉପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଋଷିବ୍ୟାସସଂବାଦେ ପଞ୍ଚମୋଽଧ୍ୟାୟଃ ।

---*---

# ଷଷ୍ଠ ଅଧ୍ୟାୟ

## ଐଶ୍ୱର୍ଯ୍ୟଯୋଗାଧ୍ୟାୟ

*(ଏହି ଅଧ୍ୟାୟରେ ସମସ୍ତ ଦେବତାମାନଙ୍କ ସ୍ୱରୂପ ବର୍ଣ୍ଣନା କରାଯାଇଛି, ସେହି ସ୍ୱରୂପ ମଧ୍ୟରେ ଶ୍ରୀଶିବ ଭାବ ମଧ୍ୟ ରହିଛି ଅର୍ଥାତ୍ ସମ୍ପୂର୍ଣ୍ଣ ଦେବତାମାନଙ୍କ ପାଖରୁ ଶିବଙ୍କର ଐଶ୍ୱର୍ଯ୍ୟ ଅଧିକ ବର୍ଣ୍ଣନା କରାଯାଇଥିବାରୁ ଏହି ଅଧ୍ୟାୟର ନାମ ଐଶ୍ୱର୍ଯ୍ୟ ଯୋଗାଧ୍ୟାୟ କୁହାଯାଇଛି ।)*

(ଈଶ୍ୱରୋବାଚ)

**ଶୃଣୁଧ୍ୱମୃଷୟଃ ସର୍ବେ ଯଥାବତ୍ପରମେଷ୍ଠିନଃ ।**
**ବକ୍ଷାମୀଶସ୍ୟ ମାହାତ୍ମ୍ୟଂ ଯତ୍ତଦ୍ୱେଦବିଦୋ ବିଦୁଃ ॥୧**
**ସର୍ବଲୋକୈକନିର୍ମାତା ସର୍ବଲୋକୈକରକ୍ଷିତା ।**
**ସର୍ବଲୋକୈକସଂହର୍ତ୍ତା ସର୍ବାତ୍ମାହଂ ସନାତନଃ ॥୨**
**ସର୍ବେଷାମେବ ବସ୍ତୁନାମନ୍ତର୍ଯ୍ୟାମୀ ମହେଶ୍ୱରଃ ।**
**ମଧ୍ୟେ ଚାନ୍ତଃସ୍ଥିତଂ ସର୍ବଂ ନାହଂ ସର୍ବତ୍ରସଂସ୍ଥିତଃ ॥୩**

ଶ୍ରୀଶଙ୍କର ଭଗବାନ୍ କହିଲେ- ହେ ଋଷିଗଣ ! ଦେବତାଗଣ ! ଯେଉଁ ପ୍ରକାର ପରମ ସ୍ଥାନରେ ବିରାଜିତ ଈଶ୍ୱରଙ୍କ ମାହାତ୍ମ୍ୟ ବର୍ଣ୍ଣନା କରିଛନ୍ତି, ତାଙ୍କୁ ଆମେ ସେହିପରି ଏହାଠାରୁ ଆଗକୁ ବର୍ଣ୍ଣନା କରିବା । ଆପଣମାନେ ସମସ୍ତେ ସମାହିତ ଚିତ୍ତ ହୋଇ ଶ୍ରବଣ କରନ୍ତୁ । ମୁଁ ହିଁ ସମସ୍ତ ଲୋକର ନିର୍ମାତା । ସମସ୍ତ ଲୋକ ନିର୍ମାଣ କରି ସମସ୍ତ ଲୋକର ରକ୍ଷାକର୍ତ୍ତା ଏବଂ ଅନ୍ତିମ ସମୟରେ ସମସ୍ତ ଲୋକକୁ ବିନାଶ କରିଥାଏ । ମୁଁ ସର୍ବାତ୍ମା, ସନାତନ, ଅନ୍ତର୍ଯ୍ୟାମୀ ତଥା ମହେଶ୍ୱର ଅଟେ । ଏହି ସମଗ୍ର ଜଗତ ମୋର ମଧ୍ୟରେ ରହିଛି । ଏହା ସବୁଆଡେ ନଥାଏ ଅର୍ଥାତ୍ ଚେତନସ୍ୱରୂପ ଅଟନ୍ତି । ପରମାତ୍ମା ମୁଁ ବ୍ୟାପକ ମଧ୍ୟ । ଏଣୁ ଜଗତ ଏକଦେଶୀୟ ବ୍ୟାପ୍ୟ ଅଟେ ।

**ଭବଦ୍ଭିରଦ୍ଭୁତଂ ଦୃଷ୍ଟଂ ଯତ୍ସ୍ୱରୂପଂ ଚ ମାମକମ୍ ।**
**ମମୈଷାହ୍ୟୁପମା ବିପ୍ରା ମାୟା ବୈ ଦର୍ଶିତା ମୟା ॥୪**
**ସର୍ବେଷାମେବ ଭବାନାମନ୍ତରଂ ସମବସ୍ଥିତଃ ।**
**ପ୍ରେରୟାମି ଜଗତ୍କୃତ୍ସ୍ନଂ କ୍ରିୟାଶକ୍ତିରିୟଂ ମମ ॥୫**

**ମୟେଦଂ ଚେଷ୍ଟତେ ବିଶ୍ୱଂ ତଦ୍‌ବୈଭାବାନୁବର୍ତ୍ତି ମେ ।**
**ସୋଽହଂ କାଲୋ ଜଗତ୍‌କୃତ୍ସ୍ନଂ ପ୍ରେରୟାମି କଳାତ୍ମକମ୍ ।।୬**

ଆପଣ ସମସ୍ତେ ମହାନୁଭବ ମୋର ଯେଉଁ ସ୍ୱରୂପକୁ ଦର୍ଶନ କଲ । ଏହା ସବୁ ମୋର ମାୟାର ସ୍ୱରୂପ ବୋଲି ବୁଝନ୍ତୁ । ହେ ବ୍ରାହ୍ମଣମାନେ ମୁଁ ହିଁ ସମସ୍ତ ଭାବର ଅନ୍ତରରେ ରହି ସମସ୍ତ ଜଗତକୁ ପ୍ରେରିତ କରିଥାଏ । ଏହା ହିଁ ମୋର କ୍ରିୟାଶକ୍ତି ଅଟେ । ମୋଠାରେ ହିଁ ଏହି ନାମ ରୂପାତ୍ମକ ଭାବ ସମସ୍ତ ବିଶ୍ୱରେ ବ୍ୟାପ୍ତ ଅଟେ । ମୁଁ ହିଁ କାଳସ୍ୱରୂପରୁ ସମସ୍ତ କଳାତ୍ମକ ଜଗତକୁ ପ୍ରେରିତ କରିଥାଏ ।

**ଏକାଂଶେନ ଜଗତ୍କୃତ୍ସ୍ନଂ କରୋମି ମୁନିପୁଙ୍ଗବାଃ ।**
**ସଂହରାମ୍ୟେକରୂପେଣ ସ୍ଥିତାବସ୍ଥା ମମୈବ ତୁ ।।୭**
**ଆଦିମଧ୍ୟାନ୍ତନିର୍ମୁକ୍ତୋ ମୟା ତତ୍ତ୍ୱପ୍ରବର୍ତ୍ତକଃ ।**
**କ୍ଷୋଭୟାମି ଚ ସର୍ଗାଦୌ ପ୍ରଧାନପୁରୁଷାବୁଭୌ ।।୮**
**ତାଭ୍ୟାଂ ସଞ୍ଜାୟତେ ବିଶ୍ୱଂ ସଂଯୁକ୍ତାଭ୍ୟାଂ ପରସ୍ପରମ୍ ।**
**ମହଦାଦିକ୍ରମେଣୈବ ମମ ତେଜୋ ବିଜୃମ୍ଭତେ ।।୯**

ହେ ମୁନିଶ୍ରେଷ୍ଠ ମୁଁ ମୋର ଏକ ଅଂଶର ସମସ୍ତ ଜଗତକୁ ନିର୍ମାଣ କରିଥାଏ । ଏକ ଅଂଶର ଜଗତରେ ରହିଥାଏ ଓ ଏକ ଅଂଶରେ ସଂହାର କରିଥାଏ । ଆଦି ମଧ୍ୟ ତଥା ଅନ୍ତରରୁ ଭିନ୍ନ ମାୟା ତତ୍ତ୍ୱର ପ୍ରବର୍ତ୍ତକ ମୁଁ ସୃଷ୍ଟିର ଆଦିରେ ପ୍ରଧାନ (ପ୍ରକୃତି) ଏବଂ ପୁରୁଷ ଏହି ଦୁଇ ତତ୍ତ୍ୱରେ ସୃଷ୍ଟି ପାଇଁ କ୍ଷୋଭନାତ୍ମକ କ୍ରିୟା ଉତ୍ପନ୍ନ କରିଥାଏ । ଯେଉଁ ଦୁଇଟିର ସଂଯୋଗରେ ମହଦ୍ (ଅହଙ୍କାର) ଆଦି କ୍ରମରେ ଏହି ସମସ୍ତ ବିଶ୍ୱ ଉତ୍ପନ୍ନ ହୋଇଥାଏ । ଏହି ସବୁ ମୋର ତେଜ ବୃଦ୍ଧିରୁ ପ୍ରାପ୍ତ ହୋଇଥାଏ ।

**ଯୋ ହି ସର୍ବଜଗତ୍ ସାକ୍ଷୀ କାଳଚକ୍ରପ୍ରବର୍ତ୍ତକଃ ।**
**ହିରଣ୍ୟଗର୍ଭୋ ମାର୍ତ୍ତଣ୍ଡଃ ସୋଽପି ମଦ୍ଦେହସମ୍ଭବଃ ।।୧୦**
**ତସ୍ମୈ ଦିବ୍ୟଂ ସ୍ୱମୈଶ୍ୱର୍ଯ୍ୟଂ ଜ୍ଞାନଯୋଗଂ ସନାତନମ୍ ।**
**ଦତ୍ତବାନାତ୍ମବାନ୍ ବେଦାନ୍ କଳ୍ପାଦୌ ଚତୁରୋ ଦ୍ୱିଜାଃ ।।୧୧**
**ସ ମନ୍ନିଯୋଗତୋ ଦେବୋ ବ୍ରହ୍ମା ମଦ୍ଭାବଭାବିତଃ ।**
**ଦିବ୍ୟଂ ତନ୍ନାମକୈଶ୍ୱର୍ଯ୍ୟଂ ସର୍ବଦାବଗତଃ ସ୍ୱୟମ୍ ।।୧୨**

ଯେଉଁ ସମସ୍ତ ଜଗତର ସାକ୍ଷୀ କାଳଚକ୍ରର ପ୍ରବର୍ତ୍ତକ ହିରଣ୍ୟଗର୍ଭ ସୂର୍ଯ୍ୟ ଅଟେ । ସେ ମଧ୍ୟ ମୋର ଅଂଶରୁ ପ୍ରକଟ ହୋଇଥାଏ। ହେ ବ୍ରାହ୍ମଣ୍ୟ କଳ୍ପର ଆଦିରେ ଜ୍ଞାନଯୋଗାତ୍ମକ ସନାତନ ଦିବ୍ୟ ସ୍ୱକୀୟ ଐଶ୍ୱର୍ଯ୍ୟ ତଥା ଚାରି ବେଦରେ ଏହା ପ୍ରଦାନ କରିଅଛି । ଏହି ବ୍ରହ୍ମଦେବ ମୋ ସତ୍ତାରେ ସତ୍ତାବାନ୍ ହୋଇ ତଥା ମୋର ନିୟୋଗରେ ଦିବ୍ୟ ଐଶ୍ୱର୍ଯ୍ୟକୁ ସ୍ୱୟଂଜ୍ଞାତା ଅଟେ ।

**ସ ସର୍ବଲୋକନିର୍ମାତା ମନ୍ନିୟୋଗେନ ସର୍ବବିତ୍ ।**
**ଭୂତ୍ୱା ଚତୁର୍ମୁଖଃ ସର୍ଗଂ ସୃଜତ୍ୟେବାତ୍ମସମ୍ଭବଃ ॥୧୩**
**ଯୋଽପି ନାରାୟଣୋଽନନ୍ତୋ ଲୋକାନାଂ ପ୍ରଭବୋଽବ୍ୟୟଃ ।**
**ମମୈବ ଚ ପରାମୂର୍ତ୍ତିଃ କରୋତି ପରିପାଳନମ୍ ॥୧୪**
**ଯୋଽନନ୍ତକଃ ସର୍ବଭୂତାନାଂ ରୁଦ୍ରଃ କାଳାତ୍ମକଃ ପ୍ରଭୁଃ ।**
**ମଦାଜ୍ଞୟାଽସୌ ସତତଂ ସଂହରିଷ୍ୟତି ମେ ତନୁଃ ॥୧୫**

ସର୍ବବେତ୍ତା ହୋଇକରି ଚତୁର୍ମୁଖ ମୋଠାରୁ ଉତ୍ପନ୍ନ ହୋଇ ମୋର ଅନୁମାନରେ ଏହି ସୃଷ୍ଟି ନିର୍ମାଣ କରିଛନ୍ତି ଏବଂ ମୋର ପ୍ରେରଣାରେ ସେହି ବ୍ରହ୍ମ ସର୍ବଲୋକଙ୍କ ନିର୍ମାତା ବୋଲି କୁହାଯାଏ । ଏହାଙ୍କଠାରୁ ଭିନ୍ନ ନାରାୟଣ ଯାହାଙ୍କୁ ଅନନ୍ତ ଅବିକାରୀ ଏବଂ ଜଗତର କାରଣ କୁହାଯାଏ ଏବଂ ଯିଏ ସର୍ବର ପାଳନକର୍ତ୍ତା ସେ ଆମର ଶ୍ରେଷ୍ଠ ମୂର୍ତ୍ତି ଅଟନ୍ତି । ସେ ସମସ୍ତ ପ୍ରାଣୀଙ୍କ ସଂହାରକ କାଳାତ୍ମକ ପ୍ରଭୁ ରୁଦ୍ର ଅଟନ୍ତି । ଯିଏ ଆମ ଆଜ୍ଞାରେ ସର୍ବଦା ସଂହାର କରିଥାନ୍ତି, ସେ ମୋର ସ୍ୱରୂପ ଅଟନ୍ତି ଅର୍ଥାତ୍ ତ୍ରିମୂର୍ତ୍ତି ସ୍ୱରୂପ ମୋର ଅଟେ ।

**ହବ୍ୟଂ ବହତି ଦେବାନାଂ କବ୍ୟଂ କବ୍ୟାଶିନାମପି ।**
**ପାକଞ୍ଚ କୁରୁତେ ବହ୍ନିଃ ସୋଽପି ମଚ୍ଛକ୍ତିନୋଦିତଃ ॥୧୬**
**ଭୁକ୍ତମାହାରଜାତଞ୍ଚ ପଚତେ ତଦହର୍ନିଶମ୍ ।**
**ବୈଶ୍ୱାନରୋଽଗ୍ନିର୍ଭଗବାନୀଶ୍ୱରସ୍ୟ ନିୟୋଗତଃ ॥୧୭**
**ଯୋଽପି ସର୍ବାମ୍ଭସାଂ ଯୋନିର୍ବରୁଣୋ ଦେବପୁଙ୍ଗବଃ ।**
**ସୋଽପି ସଞ୍ଜୀବୟେତ୍କୃତ୍ସ୍ନମୀଶ୍ୱରସ୍ୟ ନିୟୋଗତଃ ॥୧୮**

ଦେବତାମାନଙ୍କ ପାଇଁ ହବନୀୟ ଦ୍ରବ୍ୟ, ପିତୃପୁରୁଷଙ୍କ ପାଇଁ କବ୍ୟ ଏବଂ ସମସ୍ତ ପଚନୀୟ ପଦାର୍ଥର ପାକ ଯାହା ଅଗ୍ନିଦେବ କରୁଛନ୍ତି । ତାହା ମଧ୍ୟ ମୋର ଶକ୍ତିଦ୍ୱାରା ପ୍ରେରିତ ଭୋଜନ କରିଥିବା ଆହାରକୁ ଯିଏ ରାତିଦିନ ପରିପାକ କରୁଛି ସେହି ଅଗ୍ନି ବୈଶ୍ୱାନର ଭଗବାନ୍ ଅଗ୍ନି ଅଟେ । ତାହା ମଧ୍ୟ ମୋଦ୍ୱାରା ନିଯୁକ୍ତ

ଅଟେ । ଯିଏ ସମସ୍ତ ଜଳର କାରଣସ୍ୱରୂପ ଦେବତାଙ୍କ ମଧ୍ୟରେ ଶ୍ରେଷ୍ଠ ବରୁଣଦେବ ଅଟନ୍ତି । ସେ ମଧ୍ୟ ମୋଦ୍ୱାରା ନିଯୁକ୍ତ ହୋଇ ସବୁ ପ୍ରାଣୀମାନଙ୍କୁ ଜୀବନ ପ୍ରଦାନ କରନ୍ତି । ଅର୍ଥାତ୍ ବହ୍ନି, ବୈଶ୍ୱାନର, ଅଗ୍ନି ତଥା ବରୁଣ ମଧ୍ୟ ଈଶ୍ୱରଙ୍କର ଅଧୀନ ଅଟନ୍ତି ।

**ଯୋଽନ୍ତସ୍ତିଷ୍ଠତି ଭୂତାନାଂ ବହିର୍ଦେବଃ ପ୍ରଭଞ୍ଜନଃ ।**
**ମହାଜ୍ଞୟାଽସୌ ଭୂତାନାଂ ଶରୀରାଣି ବିଭର୍ତ୍ତି ହି ॥ ୧୯**
**ଯୋଽପି ସଞ୍ଜୀବନୋନୃଣାଂ ଦେବାନାମମୃତାକରଃ ।**
**ସୋମଃ ସମନ୍ନିଯୋଗେନ ନୋଦିତଃ କିଲ ବର୍ତ୍ତତେ ॥୨୦**
**ଯଃ ସ୍ୱଭାସା ଜଗତ୍କୃତ୍ସ୍ନଂ ପ୍ରଭାସୟତି ସର୍ବଶଃ ।**
**ସୂର୍ଯ୍ୟୋ ବୃଷ୍ଟିଂ ବିତନୁତେ ସ୍ୱୋସ୍ତ୍ରେଣୈବ ସ୍ୱୟମ୍ଭୁବଃ ॥୨୧**

ସମସ୍ତ ପ୍ରାଣୀଙ୍କର ଅନ୍ତରରେ ତଥା ବାହାରରେ ଯେଉଁ ପ୍ରଭଞ୍ଜନଦେବ (ବାୟୁ) ରହି ସମସ୍ତ ପ୍ରାଣୀଙ୍କ ଶରୀରକୁ ଧାରଣ କରିଛନ୍ତି, ତାହା ମଧ୍ୟ ମୋ ଆଜ୍ଞାର ଅଧୀନ ଅଟେ । ମନୁଷ୍ୟ ପାଇଁ ସଞ୍ଜୀବନ ଓ ଦେବତାଙ୍କ ପାଇଁ ଅମୃତାକାର ଯେଉଁ ସୋମଦେବ ଅଟନ୍ତି ସେ ମଧ୍ୟ ମୋଦ୍ୱାରା ନିଯୁକ୍ତିରେ ରହିଥାନ୍ତି । ଯିଏ ନିଜ କିରଣରୁ ସର୍ବଥା ସମସ୍ତ ବିଶ୍ୱକୁ ଭାସିତ କରନ୍ତି ତଥା ଯିଏ ସମୟାନୁସାରେ ନିଜ କିରଣଦ୍ୱାରା ଜଳ ସଂଗ୍ରହ କରି ବୃଷ୍ଟି କରିଥାନ୍ତି । ସେହି ସୂର୍ଯ୍ୟଦେବ ମଧ୍ୟ ମୋର ସ୍ୱୟମ୍ଭୁଙ୍କ ଶାସନରେ ଅନ୍ତର୍ଭୁକ୍ତ । ଏହି ଭାବକୁ ଶ୍ରୁତି ଅର୍ଥାତ୍ ବେଦ ମଧ୍ୟ ପୁଷ୍ଟି କରିଥାଏ । ଯଥା- 'ତମେବ ଭାନ୍ତମନୁଭାନ୍ତି ସର୍ବଂ ତସ୍ୟ ଭାସ ସର୍ବମିଦଂ ବିଭାତି' (କ.ଉ. ୨/୫/୧୫) ଅର୍ଥାତ୍ ସୂର୍ଯ୍ୟ, ଚନ୍ଦ୍ର, ତାରାଗଣ, ଅଗ୍ନି ଆଦିମାନଙ୍କର ପ୍ରକାଶରୁ ପରମାତ୍ମା ପ୍ରକାଶିତ ହୁଅନ୍ତି ନାହିଁ । ବରଂ ତାଙ୍କର ପ୍ରକାଶଦ୍ୱାରା ପ୍ରକାଶିତ ହୋଇଥାନ୍ତି ।

**ଯୋଽପ୍ୟଶେଷଜଗଚ୍ଛାସ୍ତା ଶକ୍ରଃ ସର୍ବାମରେଶ୍ୱରଃ ।**
**ଯଜ୍ୱାନାଂ ଫଳଦୋ ଦେବୋ ବର୍ତ୍ତତେ ସ ମଦାଜ୍ଞୟା ॥୨୨**
**ଯଃ ପ୍ରଶାସ୍ତା ହ୍ୟସାଧୂନାଂ ବର୍ତ୍ତତେ ନିୟମାଦି ହ ।**
**ଯମୋ ବୈବସ୍ୱତୋ ଦେବୋ ଦେବଦେବ ନିୟୋଗତଃ ॥୨୩**
**ଯୋଽପି ସର୍ବଧନାଧକ୍ଷୋ ଧନାନାଂ ସମ୍ପ୍ରଦାୟକଃ ।**
**ସୋଽପୀଶ୍ୱରଃ ନିୟୋଗେନ କୁବେରୋ ବର୍ତ୍ତତେ ସଦା ॥୨୪**

ଯିଏ ସମସ୍ତ ଜଗତର ଶାସନ କରନ୍ତି, ସମସ୍ତ ଦେବତାମାନଙ୍କର ସ୍ୱାମୀ ତଥା ଯାଜକମାନଙ୍କ ଫଳଦାତା ଇନ୍ଦ୍ରଦେବ । ସେ ମଧ୍ୟ ଆମ ଶାସନର ଅଧୀନ ଅଟନ୍ତି । ଦୁଷ୍ଟଙ୍କୁ ଦମନ କରିପାରୁଥିବା ତଥା ନିୟମଙ୍କୁ ନିଧାନ କରିପାରୁଥିବା ସାମର୍ଥ୍ୟଶାଳୀ ସୂର୍ଯ୍ୟପୁତ୍ର ଯମ ମଧ୍ୟ ଦେବାଧିଦେବ ମୋଦ୍ୱାରା ନିଯୁକ୍ତ ହୋଇ ସ୍ୱବ୍ୟାପାରରେ ତତ୍ପର ଥାଆନ୍ତି । ସମସ୍ତ ଧନର ଅଧ୍ୟକ୍ଷ ତଥା ସମସ୍ତ ଧନର ପ୍ରଦାୟକ କୁବେର ମଧ୍ୟ ମୋ ଅଧିକାରରେ ନିଜ କାର୍ଯ୍ୟରେ ସମର୍ଥ ହୋଇଥାଆନ୍ତି ।

**ଯଃ ସର୍ବରାକ୍ଷସାଂ ନାଥସ୍ତାମସାନାଂ ଫଳପ୍ରଦଃ ।**
**ମନ୍ନିୟୋଗାଦସୌ ଦେବୋ ବର୍ତ୍ତତେ ନିର୍ଋତିଃ ସଦା ॥୨୫**
**ବେତାଳଗଣଭୂତାନାଂ ସ୍ୱାମୀ ଭୋଗଫଳପ୍ରଦଃ ।**
**ଈଶାନଃ କିଲ ଭକ୍ତାନାଂ ସୋଽପି ତିଷ୍ଠେନ୍ମଦାଜ୍ଞୟା ॥୨୬**
**ଯୋ ବାମଦେବୋଽଙ୍ଗିରସଃ ଶିଷ୍ୟୋ ରୁଦ୍ରଗଣାଗ୍ରଣୀଃ ।**
**ରକ୍ଷକୋ ଯୋଗିନାଂ ନିତ୍ୟଂ ବର୍ତ୍ତତେ ସମଦାଜ୍ଞୟା ॥୨୭**

ସବୁ ରାକ୍ଷସମାନଙ୍କର ସ୍ୱାମୀ, ତାମସ ପ୍ରକୃତିର ସାଧକର ଫଳଦାତା ନିଃସୃତି ନାମକ ଦେବ ମଧ୍ୟ ମୋର ସତ୍ତାର ଅଧୀନ ଅଟନ୍ତି । ବେତାଳଗଣ ଭୂତର ସ୍ୱାମୀ । ଯୋଗରୂପ ଫଳଦାତା ଭକ୍ତ ଉପରେ ଅନୁଗ୍ରହ କରିପାରୁଥିବା ଈଶାନ ଦେବ ମଧ୍ୟ ମୋର ଆଜ୍ଞାରେ ରହିଥାନ୍ତି । ଅଙ୍ଗିରାଙ୍କ ଶିଷ୍ୟ ରୁଦ୍ରଗଣମାନଙ୍କର ଶ୍ରେଷ୍ଠ ନିତ୍ୟ ଯୋଗିମାନଙ୍କର ରକ୍ଷକ ବାମଦେବ ମୋର ଆଜ୍ଞାରେ ରହିଥାନ୍ତି ।

**ଯଶ୍ଚ ସର୍ବଜଗତ୍ପୂଜ୍ୟୋ ବର୍ତ୍ତତେ ବିଘ୍ନନାୟକଃ ।**
**ବିନାୟକୋ ଧର୍ମରତଃ ସୋଽପି ମଦ୍ୱଚନାତ୍କିଳ ॥୨୮**
**ଯୋଽପି ବ୍ରହ୍ମବିଦାଂ ଶ୍ରେଷ୍ଠୋ ଦେବସେନାପତିଃ ପ୍ରଭୁଃ ।**
**ସ୍କନ୍ଦୋଽସୌ ବର୍ତ୍ତତେ ନିତ୍ୟଂ ସ୍ୱୟମ୍ଭୁର୍ବିଧିନୋଦିତଃ ॥୨୯**
**ଯେ ଚ ପ୍ରଜାନାଂ ପତୟୋ ମରୀଚ୍ୟାଦ୍ୟାମହର୍ଷୟଃ ।**
**ସୃଜନ୍ତି ବିବିଧଂ ଲୋକଂ ପରସ୍ୟୈବ ନିୟୋଗତଃ ॥୩୦**

ସମସ୍ତ ବିଘ୍ନର ସ୍ୱାମୀ, ଧର୍ମରତ ସର୍ବ ଜଗତର ପ୍ରଥମ ପୂଜ୍ୟ ଯେଉଁ ଗଣେଶ ଦେବ ଅଟନ୍ତି ସେ ମଧ୍ୟ ମୋ ବଚନଦ୍ୱାରା ନିଯୁକ୍ତ ହୋଇଥାଆନ୍ତି । ଯେଉଁ ବ୍ରହ୍ମବେତ୍ତାମାନଙ୍କର ଶ୍ରେଷ୍ଠ ସେନାମାନଙ୍କର ସ୍ୱାମୀ ଅତ୍ୟନ୍ତ ପ୍ରଭାବଶାଳୀ ସ୍ୱୟମ୍ଭୁ ସୂର୍ଯ୍ୟଦେବ ଅଟନ୍ତି, ସେ ମଧ୍ୟ ମୋ ଆଜ୍ଞାରେ ଥାଆନ୍ତି । ମରୀଚ ଆଦି ପ୍ରଜାପତି

ମଧ୍ୟ ମୋପରି ପରମାତ୍ମାଙ୍କଦ୍ୱାରା ନିୟୋଗ ହୋଇ ନାନାପ୍ରକାର ଲୋକର ରଚନାର ସମର୍ଥ ଅଟନ୍ତି ।

**ଯା ଚ ଶ୍ରୀଃ ସର୍ବଭୂତାନାଂ ଦଦାତି ବିପୁଲାଂ ଶ୍ରିୟମ୍ ।**
**ପତ୍ନୀ ନାରାୟଣସ୍ୟାସୌ ବର୍ତ୍ତତେ ମଦନୁଗ୍ରହାତ୍ ।।୩୧**
**ବାଚଂ ଦଦାତି ବିପୁଲାଂ ଯା ଚ ଦେବୀ ସରସ୍ୱତୀ ।**
**ସାପୀଶ୍ୱରନିୟୋଗେନ ପୂଜିତା ସମ୍ପ୍ରବର୍ତ୍ତତେ ।।୩୨**
**ଯା ଶେଷପୁରୁଷାନଘୋରାନ୍ନରକାନ୍ତାରୟିଷ୍ୟତି ।**
**ସାବିତ୍ରୀଂ ସଂସ୍ମୃତା ଚାପି ମଦାଜ୍ଞାନୁବିଧାୟିନୀ ।।୩୩**

ଯିଏ ସମସ୍ତ ପ୍ରାଣୀମାନଙ୍କ ବିପୁଳ ଶ୍ରୀ ଅର୍ଥାତ୍ ନାନା ପ୍ରକାରର ଶୋଭା ପ୍ରଦାନକାରିଣୀ ବିଷ୍ଣୁଙ୍କର ପତ୍ନୀ ଲକ୍ଷ୍ମୀ ଦେବୀ ଅଟନ୍ତି। ସେ ମଧ୍ୟ ମୋ ଅନୁଗ୍ରହକୁ ପ୍ରାପ୍ତ ହୋଇ ସମର୍ଥା ହୋଇଥାଆନ୍ତି । ଯିଏ ବିଦ୍ୟାର୍ଥୀମାନଙ୍କୁ ବିଶଦବାଣୀ ପ୍ରଦାନକାରିଣୀ ସରସ୍ୱତୀ ଦେବୀ। ଯିଏ ବିଦ୍ୟା କାମନାର୍ଥିଙ୍କର ପୂଜ୍ୟ ସେ ମଧ୍ୟ ମୁଁ ଈଶ୍ୱରଙ୍କଦ୍ୱାରା ନିୟୋଜିତ ଅଟନ୍ତି । ଯାହାଙ୍କୁ ସ୍ମରଣ କରି ସମସ୍ତ ସାଧକ ପୁରୁଷ ନରକଯାତନାରୁ ମୁକ୍ତ କରିଥାଆନ୍ତି, ସେହି ସାବିତ୍ରୀ ଦେବୀ ମଧ୍ୟ ମୋ ଆଜ୍ଞାର ଅଧୀନ ଅଟନ୍ତି ।

**ପାର୍ବତୀ ପରମା ଦେବୀ ବ୍ରହ୍ମବିଦ୍ୟାପ୍ରଦାୟିନୀ ।**
**ଯାପି ଧ୍ୟାତ୍ୱା ବିଶେଷେଣ ସାପି ମଦ୍ୱଚନାନୁଗା ।।୩୪**
**ଯୋଽନନ୍ତମହିମାନନ୍ତଃ ଶେଷୋଽଶେଷାଭର ପ୍ରଭୁଃ ।**
**ଦଧାତି ଶିରସା ଲୋକଂ ସୋଽପି ଦେବନିୟୋଗତଃ ।।୩୫**
**ଯୋଽଗ୍ନିସଂବର୍ତ୍ତକୋ ନିତ୍ୟଂ ବଡବାରୂପସଂସ୍ଥିତଃ ।**
**ପିବତ୍ୟଖିଳମମ୍ଭୋଧିମୀଶ୍ୱରସ୍ୟ ନିୟୋଗତଃ ।।୩୬**

ବ୍ରହ୍ମବିଦ୍ୟାଦାତ୍ରୀ ପରମା ଦେବୀ ଭଗବତୀ ପାର୍ବତୀ ଯାହାଙ୍କୁ ଧ୍ୟାନ କରି ସାଧକ ସମସ୍ତ ପୁରୁଷାର୍ଥ ପ୍ରାପ୍ତ କରିଥାଏ, ସେ ମଧ୍ୟ ମୋ ବଚନର ଅଧୀନ । ଯେ ଅନନ୍ତ ମହିମାଶାଳୀ ଭଗବାନ୍ ଅନନ୍ତ ଶେଷଦେବ ଅଟନ୍ତି । ଯିଏ ସମସ୍ତ ଦେବତାମାନଙ୍କ ସ୍ୱାମୀ ସେ ମଧ୍ୟ ମୋର ପରମାତ୍ମାଦ୍ୱାରା ନିଯୁକ୍ତ ହୋଇ ସମଗ୍ର ବିଶ୍ୱକୁ ନିଜ ମସ୍ତକରେ ଧାରଣ କରିଥାନ୍ତି । ଯେଉଁ ପ୍ରଳୟଙ୍କରୀ ଅଗ୍ନି ବାଡବାଗ୍ନି ରୂପରେ ସମୁଦ୍ରକୁ ପାନ କରି ପାରନ୍ତି ସେ ମଧ୍ୟ ଐଶ୍ୱରୀୟ ଶକ୍ତିଦ୍ୱାରା ନିଯୁକ୍ତ ଅଟନ୍ତି ।

ଯେ ଚତୁର୍ଦ୍ଦଶଲୋକେଽସ୍ମିନ୍ ମନବଃ ପ୍ରଥିତୌଜସଃ ।
ପାଳୟନ୍ତି ପ୍ରଜାଃ ସର୍ବାସ୍ତେଽପି ତସ୍ୟ ନିୟୋଗତଃ ।।୩୭
ଆଦିତ୍ୟବସବୋ ରୁଦ୍ରା ମରୁତଶ୍ଚ ତଥାଶ୍ୱିନୌ ।
ଅନ୍ୟାଶ୍ଚ ଦେବତାଃ ସର୍ବାଃ ମଚ୍ଛାସ୍ତ୍ରେଣୈବ ନିଷ୍ଠିତାଃ ।।୩୮
ଗନ୍ଧର୍ବା ଗରୁଡାଦ୍ୟାଶ୍ଚ ସିଦ୍ଧାଃ ସାଧ୍ୟାଶ୍ଚ ଚାରଣାଃ ।
ଯକ୍ଷରକ୍ଷପିଶାଚାଶ୍ଚ ସ୍ଥିତାଃ ସୃଷ୍ଟାଃ ସ୍ୱୟମ୍ଭୁବା ।।୩୯

ଯେଉଁ ଭେଦ ଲୋକର ପ୍ରଥିତ ପରାକ୍ରମଶାଳୀ ମନୁ ତଥା ସମସ୍ତ ପ୍ରଜାମାନଙ୍କର ଅନବରତ ପାଳନ କରନ୍ତି । ସେ ମଧ୍ୟ ମୋର ଐଶ୍ୱରୀୟ ଶକ୍ତିର ଅଧୀନ । ଦ୍ୱାଦଶ ଆଦିତ୍ୟ, ଅଷ୍ଟ ବସୁ, ଏକାଦଶ ରୁଦ୍ର, ମରୁତ, ଅଶ୍ୱିନୀକୁମାର ତଥା ଅନ୍ୟ ଯେତେ ଦେବତାଗଣ ମୋର ଶାସନର ଅନ୍ତର୍ଭୁକ୍ତ । ଗନ୍ଧର୍ବ, ଗରୁଡ, ସିଦ୍ଧ, ଚାରଣ, ଯକ୍ଷ, ରାକ୍ଷସ, ପିଶାଚ ଆଦି ଯେଉଁ ନିକୃଷ୍ଟ ଦେବଯୋନି ଅଟନ୍ତି ସେମାନେ ମଧ୍ୟ ଐଶ୍ୱରୀୟ ଆଜ୍ଞାରେ ରହିଥାନ୍ତି ।

କଳା କାଷ୍ଠା ନିମେଷାଶ୍ଚ ମୁହୂର୍ତ୍ତା ଦିବସାଃ କ୍ଷପାଃ ।
ଋତବଃ ପକ୍ଷମାସାଶ୍ଚ ସ୍ଥିତାଃ ଶାସ୍ତ୍ରେ ପ୍ରଜାପତେଃ ।।୪୦
ଯୁଗମନ୍ୱନ୍ତରାଣ୍ୟେବ ମମ ତିଷ୍ଠନ୍ତି ଶାସନେ ।
ପରାଶ୍ଚୈବ ପରାର୍ଦ୍ଧାଶ୍ଚ କାଳଭେଦାସ୍ତଥାପରେ ।।୪୧
ଚତୁର୍ବିଧାନି ଭୂତାନି ସ୍ଥାବରାଣି ଚରାଣି ଚ ।
ନିୟୋଗା ଦେବ ବର୍ତ୍ତନ୍ତେ ଦେବସ୍ୟ ପରମାତ୍ମନଃ ।।୪୨

କଳା, କାଷ୍ଠା, ନିମେଷ, ମୁହୂର୍ତ୍ତ, ଦିନ, ରାତି, ଋତୁ, ପକ୍ଷ, ମାସ ଆଦି ସମସ୍ତ ମୋର ପ୍ରଜାପତି ଶାସନରେ ରହିଥାଆନ୍ତି । ଯୁଗ, ମନ୍ୱନ୍ତର, ପରାର୍ଦ୍ଧ ଆଦି ଯେତେ କାଳଭେଦ ସମସ୍ତ ମୋର ଅଧିକାରରେ ରହିଥାନ୍ତି । ଚାରିପ୍ରକାର ଅଣ୍ଡଜ, ସ୍ୱେଦଜ, ଜରାୟୁଜ, ଉଦ୍ଭିଜ ଆଦି ଯେତେ ସ୍ଥାବର-ଜଙ୍ଗମାତ୍ମକ ଭୂତ ଅଟନ୍ତି, ସେ ସମସ୍ତ ମୋର ପରମାତ୍ମା ଦେବଙ୍କ ନିୟୋଗରେ ରହିଥାନ୍ତି ।

ପାତାଳାନି ଚ ସର୍ବାଣି ଭୁବନାନି ଚ ଶାସନାତ୍ ।
ବ୍ରହ୍ମାଣ୍ଡାନି ଚ ବର୍ତ୍ତନ୍ତେ ସର୍ବାଣ୍ୟେବ ସ୍ୱୟମ୍ଭୁବଃ ।।୪୩
ଅତୀତାନ୍ୟପ୍ୟସଂଖ୍ୟାନି ବ୍ରହ୍ମାଣ୍ଡାନି ମମାଜ୍ଞୟା ।
ପ୍ରବୃତ୍ତାନି ପଦାର୍ଥୌଘୈଃ ସହିତାନି ସମନ୍ତତଃ ।।୪୪

**ବ୍ରହ୍ମାଣ୍ଡାନି ଭବିଷ୍ୟନ୍ତି ସହ ଚାତ୍ମଭିରାତ୍ମଗୈଃ ।**
**କରିଷ୍ୟନ୍ତି ସଦୈବାଜ୍ଞାଂ ପରସ୍ୟ ପରମାତ୍ମନଃ ।।୪୫**

ସମସ୍ତ ପାତାଳ, ବ୍ରହ୍ମାଣ୍ଡ ଏବଂ ଯେତେ ଭୁବନ ଅଛି ସମସ୍ତ ମୋର ସ୍ୱୟମ୍ଭୁ ପରମାତ୍ମାଙ୍କର ଶାସନରେ ରହିଛନ୍ତି । ପଛରେ ଅତୀତ କାଳରେ ଯେତେ ବ୍ରହ୍ମାଣ୍ଡ ଅସଂଖ୍ୟ ସଂଖ୍ୟାରେ ବତୀତ ହୋଇ ଯାଇଛି, ସେ ସମସ୍ତ ମଧ୍ୟ ମୋର ନାନା ପ୍ରକାର ପଦାର୍ଥ ସହିତ ମୋର ଆଜ୍ଞାରେ ରହିଥିଲେ । ଆଗରେ ଭବିଷ୍ୟତରେ ମଧ୍ୟ ମୋର ପରମାତ୍ମା ଦେବଙ୍କ ଆଜ୍ଞାରେ ରହିବେ । ଅର୍ଥାତ୍ ତିନି କାଳରେ ମୋର ଐଶ୍ୱରୀୟ ସତ୍ତା ଏକମାତ୍ର ରହିଛି ।

**ଭୂମିରାପୋଽନଲୋ ବାୟୁଃ ଖଂ ମନୋ ବୁଦ୍ଧିରେବ ଚ ।**
**ଭୂତାଦିରାଦିପ୍ରକୃତିର୍ନିୟୋଗେ ମମ ବର୍ତ୍ତତେ ।।୪୬**
**ଯା ଶେଷଜଗତାଂ ଯୋନିର୍ମୋହିନୀ ସର୍ବଦେହିନାମ୍ ।**
**ମୟା ବିବର୍ତ୍ତତେ ନିତ୍ୟ ସାପୀଶ୍ୱରଃ ନିୟୋଗତଃ ।।୪୭**
**ଯୋ ବୈ ଦେହଭୃତା ଦେବଃ ପୁରୁଷଃ ପଚ୍ୟତେ ପରଃ ।**
**ଆତ୍ମାସୌ ବର୍ତ୍ତତେ ନିତ୍ୟମୀଶ୍ୱରସ୍ୟ ନିୟୋଗତଃ ।।୪୮**

ଭୂମି, ଜଳ, ଅଗ୍ନି, ବାୟୁ, ଆକାଶ, ମନ, ବୁଦ୍ଧି ଏବଂ ପ୍ରକୃତି - ଏ ସମସ୍ତ ମୋର ଶାସନରେ ରହି ଅଛନ୍ତି । ଯେ ସମସ୍ତ ଜଗତର ମୋହିନୀ ଶକ୍ତି ତଥା ସମସ୍ତଙ୍କୁ ଉତ୍ପନ୍ନ କରୁଥିବା ମାୟା ମଧ୍ୟ ମୋର ଐଶ୍ୱରୀୟ ଶକ୍ତିଦ୍ୱାରା ନିଯୁକ୍ତ, ଯିଏ ଦେହଧାରୀଙ୍କ ମଧ୍ୟରେ ଦ୍ୟୋତନାତ୍ମକ ପୁରୁଷ, ଯାହାଙ୍କୁ ଆତ୍ମା ବୋଲି କୁହାଯାଏ, ସେ ମଧ୍ୟ ମୋର ଐଶ୍ୱରୀୟ ଶକ୍ତିଦ୍ୱାରା ନିଯୁକ୍ତ ଅଟନ୍ତି ।

**ବିଧୂୟ ମୋହକଳିଳଂ ଯୟା ପଶ୍ୟତି ତତ୍ପଦମ୍ ।**
**ସାପି ବୁଦ୍ଧିର୍ମହେଶସ୍ୟ ନିୟୋଗ ବଶବର୍ତ୍ତିନୀ ।।୪୯**
**ବହୁନାତ୍ର କିମୁକ୍ତେନ ମମ ଶକ୍ତ୍ୟାତ୍ମକଂ ଜଗତ୍ ।**
**ମୟୈବ ପ୍ରେର୍ଯ୍ୟତେ କୃତ୍ସ୍ନଂ ମୟୈବ ପ୍ରଳୟଂ ବ୍ରଜେତ୍ ।।୫୦**

ମୋହରୂପ ମଳିନକୁ ଧୌତ କରୁଥିବା ପବିତ୍ର ବୁଦ୍ଧି ଯାହା ସାଧକର ତତ୍ପଦ ଅର୍ଥାତ୍ ପରମାତ୍ମା ପଦର ସାକ୍ଷାତ୍ କରାଇଥାଏ, ସେ ମଧ୍ୟ ମୋର ଐଶ୍ୱରୀୟ ଶକ୍ତିଦ୍ୱାରା ଅଧୀନ ଅଟେ । ଯେ ପର୍ଯ୍ୟନ୍ତ କୁହାଯାଇପାରେ ଏ ସମସ୍ତ ଜଗତ ମୋର ଶକ୍ତିରେ ହିଁ ବିଳାସ ଅଟେ । ମୁଁ ହିଁ ଏ ସମସ୍ତର ପ୍ରେରକ ଅଟେ ତଥା ଅନ୍ତିମରେ ମୋ ମଧ୍ୟରେ ଏ ସମସ୍ତ ଲୟ ହୋଇଥାଏ ।

ଅହଂ ହି ଭଗବାନୀଶଃ ସ୍ୱୟଂ ଜ୍ୟୋତିଃ ସନାତନଃ ।
ପରମାତ୍ମା ପରଂବ୍ରହ୍ମ ମତ୍ତୋ ହ୍ୟନ୍ୟୋ ନ ବିଦ୍ୟତେ ।।୫୧
ଇତ୍ୟେତତ୍ପରମଂ ଜ୍ଞାନଂ ଯୁଷ୍ମାକଂ କଥିତଂ ମୟା ।
ଜ୍ଞାତ୍ୱା ବିମୁଚ୍ୟତେ ଜନ୍ତୁର୍ଜନ୍ମସଂସାରବନ୍ଧନାତ୍ ।।୫୨

ମୁଁ ଭଗବାନ୍ ଈଶ୍ୱର, ସ୍ୱୟଂ ଜ୍ୟୋତି, ସନାତନ, ପରମାତ୍ମା, ବ୍ରହ୍ମ ଅଟୁ । ମୋଠାରୁ ଅନ୍ୟ କେହି ନାହିଁ । ହେ ମୁନିଗଣ ! ଏହି ପରମଜ୍ଞାନ ମୁଁ ଆପଣ ସମସ୍ତଙ୍କୁ ଶୁଣାଇଲି । ଏହାକୁ ଜାଣିକରି ପ୍ରାଣୀ ଜନ୍ମମୃତ୍ୟୁରୂପ ସଂସାର ବନ୍ଧନରୁ ମୁକ୍ତି ପାଇଥାଏ ।

ଇତି ଶ୍ରୀକୂର୍ମପୁରାଣେ ଉତ୍ତରାର୍ଦ୍ଧେ ଈଶ୍ୱରଗୀତାସୁ ଉପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଋଷିବ୍ୟାସସଂବାଦେ ଷଷ୍ଠ ଅଧ୍ୟାୟଃ ।

---*---

# ସପ୍ତମ ଅଧ୍ୟାୟ

## ବିଭୂତି ଯୋଗ

*(ଏହି ଅଧ୍ୟାୟରେ ବିସ୍ତାର ଭାବରେ ବିଭୂତି ବର୍ଣ୍ଣନା ହୋଇଛି, ଅନ୍ତରେ ବନ୍ଧ ନିରୂପଣ କରାହୋଇଛି, ତେଣୁ ଏହି ଅଧ୍ୟାୟର ନାମ ବିଭୂତିଯୋଗ କୁହାଯାଇଛି ।)*

**ଶୃଣୁଧ୍ୱମୃଷୟଃ ସର୍ବେ ପ୍ରଭାବଂ ପରମେଷ୍ଠିନଃ ।**
**ଯଂ ଜ୍ଞାତ୍ୱା ପୁରୁଷୋ ମୁକ୍ତୋ ନ ସଂସାରେ ପତେତ୍ପୁନଃ ॥୧**
**ପରାତ୍ପରତରଂ ବ୍ରହ୍ମ ଶାଶ୍ୱତଂ ଧ୍ରୁବମବ୍ୟୟମ୍ ।**
**ନିତ୍ୟାନନ୍ଦଂ ନିର୍ବିକଳ୍ପଂ ତଦ୍ଧାମ ପରମଂ ମମ ॥୨**
**ଅହଂ ବ୍ରହ୍ମବିଦାଂ ବ୍ରହ୍ମା ସ୍ୱୟମ୍ଭୂର୍ବିଶ୍ୱତୋ ମୁଖଃ ।**
**ମାୟାବିନାମଽହଂ ଦେବଃ ପୁରାଣୋ ହରିରବ୍ୟୟଃ ॥୩**

ହେ ଋଷିଗଣ ! ଆପଣମାନେ ସମସ୍ତେ ପରମାତ୍ମାଙ୍କ ପ୍ରଭାବ ଶ୍ରବଣ କରନ୍ତୁ । ଯାହକୁ ଜାଣିକରି ମନୁଷ୍ୟ ମୁକ୍ତ ହୋଇଯାଇଥାଏ ଏବଂ ପୁନର୍ବାର ସଂସାର ଚକ୍ରକୁ ଆସି ନଥାଏ । ବ୍ରହ୍ମା, ବିଷ୍ଣୁ ଆଦିରୁ ଶ୍ରେଷ୍ଠ ସନାତନ ନିଶ୍ଚଳ ଅବିକାରୀ, ନିତ୍ୟାନନ୍ଦସ୍ୱରୂପ, ନିର୍ବିକଳ୍ପାତ୍ମକ ବ୍ରହ୍ମଙ୍କର ସ୍ୱରୂପ ଅଟନ୍ତି । ଏହା ହିଁ ଆମର ପରମ ଧାମ ଅଟେ । ବେଦବେତ୍ତା ସ୍ୱୟମ୍ଭୁ ଚତୁର୍ମୁଖ ବ୍ରହ୍ମା ମୁଁ ଅଟେ । ମାୟାବୀମାନଙ୍କ ମଧ୍ୟରେ ମୁଁ ପୁରାତନ ଦେବ ହରି ଅଟେ ।

**ଯୋଗିନାମସ୍ମ୍ୟହଂ ଶମ୍ଭୁଃ ସ୍ତ୍ରୀଣାଂ ଦେବୀ ଗିରୀନ୍ଦ୍ରଜା ।**
**ଆଦିତ୍ୟାନାମହଂ ବିଷ୍ଣୁଃ ବସୂନାମସ୍ମି ପାବକଃ ॥୪**
**ରୁଦ୍ରାଣାଂ ଶଙ୍କରଶ୍ଚାହଂ ଗରୁଡଃ ପତତାମହମ୍ ।**
**ଐରାବତୋ ଗଜେନ୍ଦ୍ରାଣାଂ ରାମଃ ଶସ୍ତ୍ରଭୃତାମହମ୍ ॥୫**

ଯୋଗିମାନଙ୍କ ମଧ୍ୟରେ ମୁଁ ଅବ୍ୟୟସ୍ୱରୂପ ଶମ୍ଭୁ ଅଟେ । ସ୍ତ୍ରୀମାନଙ୍କ ମଧ୍ୟରେ ଭଗବତୀ ପାର୍ବତୀ ଅଟେ । ଆଦିତ୍ୟ ମଧ୍ୟରେ ମୁଁ ବିଷ୍ଣୁ, ବସୁମାନଙ୍କ ମଧ୍ୟରେ ମୁଁ ପାବକ ଅଟେ । ରୁଦ୍ର ମଧ୍ୟରେ ମୁଁ ଶଙ୍କର । ପକ୍ଷୀମାନଙ୍କ ମଧ୍ୟରେ ମୁଁ ଗରୁଡ, ହାତୀମାନଙ୍କ ମଧ୍ୟରେ ମୁଁ ଐରାବତ ତଥା ଶସ୍ତ୍ରଧାରୀମାନଙ୍କ ମଧ୍ୟରେ ମୁଁ ରାମଚନ୍ଦ୍ର ଅଟେ ।

ଋଷୀଣାଞ୍ଚ ବଶିଷ୍ଠୋଽହଂ ଦେବାନାଂ ଚ ଶତକ୍ରତୁଃ ।
ଶିଳ୍ପୀନାଂ ବିଶ୍ୱକର୍ମାହଂ ପ୍ରହ୍ଲାଦଃ ସୁରବିଦ୍ୱିଷାମ୍ ॥୬
ମୁନୀନାମପ୍ୟହଂ ବ୍ୟାସୋ ଗଣାନାଂ ଚ ବିନାୟକଃ ।
ବୀରାଣାଂ ବୀରଭଦ୍ରୋଽହଂ ସିଦ୍ଧାନାଂ କପିଳୋ ମୁନିଃ ॥୭
ପର୍ବତାନାମହଂ ମେରୁଃ ନକ୍ଷତ୍ରାଣାଂ ଚ ଚନ୍ଦ୍ରମାଃ ।
ବଜ୍ରଂ ପ୍ରହରଣାନଞ୍ଚ ବ୍ରତାନାଂ ସତ୍ୟମସ୍ମ୍ୟହମ୍ ॥୮

ମୁଁ ଋଷିମାନଙ୍କ ମଧ୍ୟରେ ବଶିଷ୍ଠ, ଦେବମାନଙ୍କ ମଧ୍ୟରେ ଇନ୍ଦ୍ର, ଶିଳ୍ପୀମାନଙ୍କ ମଧ୍ୟରେ ବିଶ୍ୱକର୍ମା, ରାକ୍ଷସମାନଙ୍କ ମଧ୍ୟରେ ମୁଁ ପ୍ରହଲାଦ, ମୁନିମାନଙ୍କ ମଧ୍ୟରେ ବ୍ୟାସଦେବ, ଗଣମାନଙ୍କ ମଧ୍ୟରେ ବିନାୟକ, ବୀରମାନଙ୍କ ମଧ୍ୟରେ ବୀରଭଦ୍ର ଏବଂ ସିଦ୍ଧମାନଙ୍କ ମଧ୍ୟରେ କପିଳମୁନି ଅଟେ । ପର୍ବତ ମଧ୍ୟରେ ମୁଁ ମେରୁ, ନକ୍ଷତ୍ରମାନଙ୍କ ମଧ୍ୟରେ ମୁଁ ଚନ୍ଦ୍ରମା, ଅସ୍ତ୍ରଶସ୍ତ୍ର ମଧ୍ୟରେ ମୁଁ ବଜ୍ର ତଥା ବ୍ରତ ମଧ୍ୟରେ ମୁଁ ସତ୍ୟ ଅଟେ ।

ଅନନ୍ତୋ ଭୋଗିନାଂ ଦେବଃ ସେନାନୀନାଂ ଚ ପାବକିଃ ।
ଆଶ୍ରମାଣାଂ ଗୃହସ୍ଥୋଽହମୀଶ୍ୱରାଣାଂ ମହେଶ୍ୱରଃ ॥୯
ମହାକଳ୍ପଶ୍ଚ କଳ୍ପାନାଂ ଯୁଗାନାଂ କୃତମସ୍ମ୍ୟହମ୍ ।
କୁବେରଃ ସର୍ବଯକ୍ଷାଣାଂ ଗଣେଶାନାଂ ଚ ବୀରୁକଃ ॥୧୦
ପ୍ରଜାପତିନାଂ ଦକ୍ଷୋଽହଂ ନିର୍ରତିଃ ସର୍ବରକ୍ଷସାମ୍ ।
ବାୟୁର୍ବଳବତାମସ୍ମି ଦ୍ୱୀପାନାଂ ପୁଷ୍କରୋଽସ୍ମ୍ୟହମ୍ ॥୧୧

ମୁଁ ସର୍ପମାନଙ୍କ ମଧ୍ୟରେ ଅନନ୍ତଦେବ । ସେନାପତିମାନଙ୍କ ମଧ୍ୟରେ କାର୍ତ୍ତିକେୟ, ଆଶ୍ରମ ମଧ୍ୟରେ ଗୃହସ୍ଥାଶ୍ରମ, ଈଶ୍ୱର ମଧ୍ୟରେ ମହେଶ୍ୱର, କଳ୍ପ ମଧ୍ୟରେ ମହାକଳ୍ପ, ଯୁଗ ମଧ୍ୟରେ ସତ୍ୟଯୁଗ ଅଟେ । ସବୁ ଯକ୍ଷ ମଧ୍ୟରେ ମୁଁ କୁବେର, ଗଣେଶ ମଧ୍ୟରେ ବୀରୁକ, ପ୍ରଜାପତି ମଧ୍ୟରେ ଦକ୍ଷ, ସମସ୍ତ ରାକ୍ଷସମାନଙ୍କ ମଧ୍ୟରେ ମୁଁ ନିୟତି, ବଳବାନଙ୍କ ମଧ୍ୟରେ ବାୟୁ ତଥା ଦ୍ୱୀପମାନଙ୍କ ମଧ୍ୟରେ ପୁଷ୍କର ଅଟେ ।

ମୃଗେନ୍ଦ୍ରାଣାଂ ଚ ସିଂହୋଽହଂ ଯନ୍ତ୍ରାଣାଂ ଧନୁରେବ ଚ ।
ବେଦାନାଂ ସାମବେଦୋଽହଂ ଯଜୁଷାଂ ଶତରୁଦ୍ରୀୟମ୍ ॥୧୨
ସାବିତ୍ରୀଂ ସର୍ବଜପ୍ୟାନାଂ ଗୁହ୍ୟାନାଂ ପ୍ରଣବୋସ୍ମ୍ୟହମ୍ ।
ସୂକ୍ତାନାଂ ପୌରୁଷଂ ସୂକ୍ତଂ ଜ୍ୟେଷ୍ଠସାମ ଚ ସାମସୁ ॥୧୩

**ସର୍ବବେଦାର୍ଥବିଦୁଷାଂ ମନୁଃ ସ୍ୱାୟମ୍ଭୁବୋଽସ୍ମ୍ୟହମ୍ ।**
**ବ୍ରହ୍ମାବର୍ତ୍ତସ୍ତୁ ଦେଶାନାଂ କ୍ଷେତ୍ରାଣାମବିମୁକ୍ତକମ୍ ॥୧୪**

ମୁଁ ମୃଗେନ୍ଦ୍ର ମଧ୍ୟରେ ସିଂହ, ଯନ୍ତ୍ର ମଧ୍ୟରେ ଧନୁଷ, ବେଦ ମଧ୍ୟରେ ସାମବେଦ ଏବଂ ଯଜୁର୍ବେଦ ମଧ୍ୟରେ ଶତରୁଦ୍ରୀୟ ଅଟେ । ଜପମାନଙ୍କ ମଧ୍ୟରେ ମୁଁ ସାବିତ୍ରୀ, ଗୋପନୀୟ ତତ୍ତ୍ୱ ମଧ୍ୟରେ ମୁଁ ଓଙ୍କାର । ସୂକ୍ତ ମଧ୍ୟରେ ପୁରୁଷସୂକ୍ତ, ସାମ ମଧ୍ୟରେ ଜ୍ୟେଷ୍ଠସାମ, ସମସ୍ତ ବେଦବେତ୍ତା ମଧ୍ୟରେ ସ୍ୱାୟମ୍ଭୁବ ମନୁ ଅଟେ । ଦେଶ ମଧ୍ୟରେ ବ୍ରହ୍ମାବର୍ତ୍ତ, କ୍ଷେତ୍ର ମଧ୍ୟରେ ଅବିମୁକ୍ତ କ୍ଷେତ୍ର (କାଶୀ) ଅଟେ ।

**ବିଦ୍ୟାନାମାତ୍ମବିଦ୍ୟାହଂ ଜ୍ଞାନାନାମୈଶ୍ୱରଂ ପରମ୍ ।**
**ଭୂତାନାମସ୍ମ୍ୟହଂ ବ୍ୟୋମ ତତ୍ତ୍ୱାନାଂ ମୃତ୍ୟୁରେବ ଚ ॥୧୫**
**ପାଶାନାମସ୍ମ୍ୟହଂ ମାୟା କାଳଃ କଲ୍ୟତାମହମ୍ ।**
**ଗତୀନାଂ ମୁକ୍ତିରେବାହଂ ପରେଷାଂ ପରମେଶ୍ୱରଃ ॥୧୬**
**ଯଚ୍ଚାନ୍ୟଦପି ଲୋକେଽସ୍ମିନ୍ ସତ୍ତ୍ୱଂ ତେଜୋ ବଲାଧିକମ୍ ।**
**ତତ୍ସର୍ବଂ ପ୍ରତିଜାନୀଧ୍ୱଂ ମମ ତେଜୋ ବିଜୃମ୍ଭିତମ୍ ॥୧୭**

ସମସ୍ତ ବିଦ୍ୟା ମଧ୍ୟରେ ମୁଁ ଆତ୍ମବିଦ୍ୟା ଅଟେ । ଜ୍ଞାନୀମାନଙ୍କ ମଧ୍ୟରେ ପରମ ଐଶ୍ୱରୀୟ ଜ୍ଞାନ ଅଟେ । ମହାଭୂତ ମଧ୍ୟରେ ମୁଁ ଆକାଶ, ତତ୍ତ୍ୱ ମଧ୍ୟରେ ମୁଁ ମୃତ୍ୟୁ, ପାଶ ମଧ୍ୟରେ ମୁଁ ମାୟା ଆକଳନ କରିବା ମଧ୍ୟରେ ମୁଁ କାଳ, ଗତି ମଧ୍ୟରେ ମୁଁ ମୁକ୍ତି ତଥା ଶ୍ରେଷ୍ଠ ତତ୍ତ୍ୱରେ ମୁଁ ପରମେଶ୍ୱର ଅଟେ । ଯାହା କିଛି ଏସବୁଠାରୁ ଭିନ୍ନ ସଂସାରରେ ତେଜ ଏବଂ ବଳ ସମ୍ପନ୍ନ ବସ୍ତୁ ଅଟେ । ଏସବୁ ମୋର ତେଜରୁ ସମୃଦ୍ଧି ପ୍ରାପ୍ତ ହୋଇଥାଏ ଏହା ହିଁ ନିଶ୍ଚିତ ବୋଲି ବୁଝନ୍ତୁ । ସଂକ୍ଷେପରେ ମୁଁ ନିଜ ବିଭୁତିର ଦିଗ୍‌ଦର୍ଶନ ମାତ୍ର ଆପଣମାନଙ୍କୁ କହିଗଲି ।

**ଆତ୍ମାନଃ ପଶବଃ ପ୍ରୋକ୍ତା ସର୍ବେ ସଂସାରବର୍ତ୍ତିନଃ ।**
**ତେଷାଂ ପତିରହଂ ଦେବଃ ସ୍ମୃତଃ ପଶୁପତିର୍ବୁଧୈଃ ॥୧୮**
**ମାୟାପାଶେନ ବଧ୍ନାମି ପଶୂନେତାନ୍ ସ୍ୱଲୀଲୟା ।**
**ମାମେବ ମୋଚକଂ ପ୍ରାହୁଃ ପଶୂନାଂ ବେଦବାଦିନଃ ॥୧୯**
**ମାୟାପାଶେନ ବଦ୍ଧାନାଂ ମୋଚକୋଽନ୍ୟୋ ନ ବିଦ୍ୟତେ ।**
**ମାମୃତେ ପରମାତ୍ମାନଃ ଭୂତାଧିପତିମବ୍ୟୟମ୍ ॥୨୦**

ସଂସାରର ନାନାପ୍ରକାର ବିଷୟରେ ରୁଚି ରଖିଥିବା ଜୀବଙ୍କୁ ପଶୁ ସଞ୍ଜ୍ଞା ଦିଆହୋଇଛି । ବିଦ୍ୱାନ ମାନେ ଏହି ପଶୁମାନଙ୍କ ସ୍ୱାମି ପଶୁପତି ଦେବ ମତେ

କୁହାଯାଇଛି । ମାୟା ରୂପୀ ଫାସଦ୍ୱାରା ଏହି ପଶୁମାନଙ୍କୁ ମୁଁ ନିଜ ଲୀଳାରେ ବନ୍ଧନ କରିଥାଏ । ଦେବବାଦୀ ମତେ ଏହି ପଶୁମାନଙ୍କ ମୁକ୍ତିଦାତା ବୋଲି କହିଥାଆନ୍ତି । ପରମାତ୍ମା ସ୍ୱରୂପ ଭୂତମାନଙ୍କ ସ୍ୱାମୀ ଅବିକାରୀ ମୋଛଡା ମାୟା ଫାଶଦ୍ୱାରା ବନ୍ଧା ହେଇଥିବା ଜୀବଙ୍କୁ ମୁକ୍ତ କଲାବାଲା ଆଉ କେହିନୁହେଁ ।

**ଚତୁର୍ବିଶଂତି ତତ୍ତ୍ୱାନି ମାୟା କର୍ମଗୁଣା ଇତି ।**
**ଏତେ ପାଶାଃ ପଶୁପତେଃ କ୍ଲେଶାଶ୍ଚ ପଶୁବନ୍ଧନାଃ ॥୨୧**
**ମନୋବୁଦ୍ଧିରହଂକାରଃ ଖାନିଳାଗ୍ନି ଜଳାନିଭଃ ।**
**ଏତା ପ୍ରକୃତୟସ୍ତ୍ୱଷ୍ଟୌ ବିକାରାଶ୍ଚ ତଥାପରେ ॥୨୨**
**ଶ୍ରୋତ୍ରଂ ତ୍ୱକ୍‌ଚକ୍ଷୁଂଷୀ ଜିହ୍ୱାଘ୍ରାଣଂ ଚୈବ ତୁ ପଞ୍ଚମମ୍ ।**
**ପାୟୂପସ୍ଥଂ କରୌ ପାଦୌ ବାକ୍ ଚୈବ ଦଶମୀ ମତା ॥୨୩**
**ଶବ୍ଦଃ ସ୍ପର୍ଶଶ୍ଚ ରୂପଂ ଚ ରସୋ ଗନ୍ଧସ୍ତଥୈବ ଚ ।**
**ତ୍ରୟୋବିଂଶତିରୋତାନି ତତ୍ତ୍ୱାନି ପ୍ରାକୃତାନି ଚ ॥୨୪**

ଚବିଶ ତତ୍ତ୍ୱ, ମାୟା, କର୍ମ ଏବଂ ଗୁଣ ଏସବୁ ପଶୁପତି ଭଗବାନ୍‌ଙ୍କର ପାଶ କୁହାଯାଏ ଏବଂ କ୍ଲେଶ ହିଁ ପଶୁମାନଙ୍କର ବନ୍ଧନ, ମନ, ବୁଦ୍ଧି, ଅହଂକାର, ଆକାଶ, ବାୟୁ, ଅଗ୍ନି, ଜଳ ଏବଂ ଭୂମି ଏହି ଆଠଟି ଈଶ୍ୱରଙ୍କର ପ୍ରକୃତି ଅଟେ । ଏସବୁ ଠାରୁ ଭିନ୍ନ ବିକାର ଅଟେ କାନ, ଚର୍ମ, ନେତ୍ର, ଜିହ୍ୱା, ନାଶିକା ତଥା ଗୁଦା, ଉପସ୍ଥ, ହାତ, ପାଦ, ବାକ୍ ଏସବୁ ଜ୍ଞାନେନ୍ଦ୍ରିୟ ଏବଂ କର୍ମେନ୍ଦ୍ରିୟ ଭେଦରେ ଏହି ଦଶଇନ୍ଦ୍ରିୟ ଅଟେ । ଶବ୍ଦ, ସ୍ପର୍ଶ, ରୂପ, ରସ ତଥା ଗନ୍ଧ ଏହି ତେଇଶି ତତ୍ତ୍ୱ ପ୍ରକୃତିରୁ ଉତ୍ପନ୍ନ ହୋଇଥାଏ ତେଣୁ ଏସବୁ ତତ୍ତ୍ୱର କାରଣ ପ୍ରକୃତି ଅଟେ ।

**ଚତୁର୍ବିଂଶକମବ୍ୟକ୍ତଂ ପ୍ରଧାନଂ ଗୁଣଲକ୍ଷଣମ୍ ।**
**ଅନାଦି ମଧ୍ୟ ନିଧନଂ କାରଣଂ ଜଗତଃ ପରମ୍ ॥୨୫**
**ସତ୍ତ୍ୱଂ ରଜସ୍ତମଶ୍ଚେତି ଗୁଣତ୍ରୟମୁଦାହୃତମ୍ ।**
**ସାମ୍ୟାବସ୍ଥିତିମେତେଷାମବ୍ୟକ୍ତାଂ ପ୍ରକୃତିଂ ବିଦୁଃ ॥୨୬**
**ସତ୍ତ୍ୱଂ ଜ୍ଞାନଂ ତମୋଜ୍ଞାନଂ ରାଜସଂ ସମୁଦାହୃତମ୍ ।**
**ଗୁଣାନାଂ ବୁଦ୍ଧିବୈଷମ୍ୟାଦ୍ ବୈଷମ୍ୟଂ କବୟୋଃ ବିଦୁଃ ॥୨୭**

ଚବିଶ ତତ୍ତ୍ୱ ଅବ୍ୟକ୍ତ ଅଟେ । ତ୍ରିଗୁଣ ସାମ୍ୟାବସ୍ଥା ଯାହାକୁ ପ୍ରଧାନ କୁହାଯାଏ । ଆଦି, ଅନ୍ତ, ବିନାଶ ଶୂନ୍ୟ ଜଗତର କାରଣ ଅଟେ । ତାକୁ ସତ୍ତ୍ୱ, ରସ, ତମ ଏହି ତିନି ଗୁଣ କୁହାଯାଏ । ଏହି ଗୁଣର ନ୍ୟୂନାଧିକ ଭାବ ଶୂନ୍ୟ

ସାମ୍ୟାବସ୍ଥାକୁ ପ୍ରକୃତି କୁହାଯାଏ । 'ସତ୍ତ୍ୱରଜସ୍ତମସା ସାମ୍ୟାବସ୍ଥା ପ୍ରକୃତିଃ' (ସାଂଖ୍ୟକୌମୁଦୀ) ଜ୍ଞାନ ମଧ୍ୟ ଗୁଣର ବୈଷମ୍ୟକୁ ସାତ୍ତ୍ୱିକ, ରାଜସ, ତାମସ ଭେଦରୁ ତିନି ପ୍ରକାରର ବିଦ୍ୱାନ୍‌ମାନେ ନିଶ୍ଚୟ କରନ୍ତି ।

**ଧର୍ମାଧର୍ମାବିତି ପ୍ରୋକ୍ତୌ ପାଶୌ ଦ୍ୱୌ କର୍ମସଙ୍ଗିତୌ ।**
**ମୟ୍ୟର୍ପିତାନି କର୍ମାଣି ନ ବନ୍ଧାୟ ବିମୁକ୍ତୟେ ॥୨୮**
**ଅବିଦ୍ୟାମସ୍ମିତାଂ ରାଗଂ ଦ୍ୱେଷଞ୍ଚାଭିନିବେଶନମ୍ ।**
**କ୍ଳେଶାଖ୍ୟାସ୍ତାନ୍ ସ୍ୱୟଂ ପ୍ରାହ ପାଶାନାତ୍ମନି ବନ୍ଧନାତ୍॥୨୯**
**ଏତେଷାମେବ ପାଶାନାଂ ମାୟାକାରଣମୁଚ୍ୟତେ ।**
**ମୂଳପ୍ରକୃତିରବ୍ୟକ୍ତା ସା ଶକ୍ତିର୍ମୟି ତିଷ୍ଠତି ॥୩୦**

କର୍ମ ସଂସ୍କାରୂପ ଧର୍ମ ଏବଂ ଅଧର୍ମ ଏହି ଦୁଇଟି ପାଶ ଅଟେ । ପରନ୍ତୁ ଏହି କର୍ମ ମତେ ଅର୍ପଣ କଲେ ବନ୍ଧନର କାରଣ ହୋଇ ନଥାଏ ବରଂ ଏହି ଅର୍ପିତ କର୍ମ ମୁକ୍ତି ପ୍ରଦାନ କରିଥାଏ । ଅବିଦ୍ୟା, ଅସ୍ମିତା, ରାଗ, ଦ୍ୱେଷ ଏବଂ ଅଭିନିବେଶ ଏହି ପାଞ୍ଚ କ୍ଳେଶ ଅଟେ। ଏହା ଆତ୍ମାର ବନ୍ଧନ ଅଟେ । ଅତଏବ ଏହା ପାଶ ଅଟେ । ଏହି ସମସ୍ତ ପାଶ (ବନ୍ଧନ)ର କାରଣ ମାୟା ଅଟେ ।ଯାହାକୁ ମୂଳ ପ୍ରକୃତି ମଧ୍ୟ କୁହାଯାଏ । ଏହା ହିଁ ଶକ୍ତି ରୂପରେ ଆମ ମଧ୍ୟରେ ରହିଥାଏ ।

ଅନାତ୍ମନି ଚ ଦେହାଦୌ ଆତ୍ମବୁଦ୍ଧିସ୍ତୁ ଦେହିନାମ୍ ।
ଅବିଦ୍ୟା ତତ୍କୃତୋ ବନ୍ଧସ୍ତନ୍ନାଶେ ମୋକ୍ଷ ଉଚ୍ୟତେ ॥ (ସର୍ବଦର୍ଶନସଂଗ୍ରହ)

ଅର୍ଥାତ୍ ଅନାତ୍ମ ଦେହାଦି ପଦାର୍ଥରେ ଯେଉଁ ଆତ୍ମବୁଦ୍ଧି ଅଟେ, ଏହାକୁ ଅବିଦ୍ୟା କୁହାଯାଏ । ଏହାଦ୍ୱାରା ଜୀବର ବନ୍ଧନ ହୋଇଥାଏ । ଏବଂ ଏହାର ବିନାଶ ହେଲେ ଜୀବ ମୋକ୍ଷପ୍ରାପ୍ତି ହୋଇଥାଏ । 'ଦୃଗ୍‌ଦର୍ଶନଶକ୍ତ୍ୟୋରେକାତ୍ମ-ଦ୍ୱାଭିମାନୋଽସ୍ମିତା' ଅର୍ଥାତ୍ ଚେତନ ଏବଂ ଜଡ ଏହାର ଏକତ୍ୱ ଅଭିମାନକୁ ଅସ୍ମିତା କୁହାଯାଏ । 'ସୁଖାନୁଶୟୀ ରାଗଃ' (ଯୋ.ଦ. ୭/୨) ଅର୍ଥାତ୍ ସୁଖକୁ ସ୍ମରଣ କରି ତାକୁ ସାଧନରେ ଯେଉଁ ତୃଷ୍ଣା ଜାତ ହୁଏ ତାକୁ ରାଗ କୁହାଯାଏ । 'ଦୁଃଖାନୁଶୟୀ ଦ୍ୱେଷ' (ଯୋ.ଦ. ୨/୮) ଅର୍ଥାତ୍ ଦୁଃଖ ଦେଖିକରି ଘୃଣା ଉତ୍ପନ୍ନ ହେବା ଦ୍ୱେଷ ଅଟେ । 'ସ୍ୱରସବାହୀ ବିଦୁଷୋଽପି ତଥା ରୂଢୋଽଭିନିବେଶଃ' (ଯୋ.ଦ. ୨/୯) ଅର୍ଥାତ୍ ସ୍ୱଭାବତଃ ଅନେକ ଯୋନିଗତ ମରଣ ଦୁଃଖ ଭୟଦ୍ୱାରା ଭୟଭୀତ ହେବା ଅଭିନିବେଶ ଦୁଃଖ କୁହାଯାଏ । ଏହା ହିଁ ଯୋଗଦର୍ଶନ ମତରେ ପଞ୍ଚ କ୍ଳେଶ ଅଟେ ।

**ସ ଏବ ମୂଳପ୍ରକୃତିଃ ପ୍ରଧାନଂ ପୁରୁଷୋଽପି ଚ ।**
**ବିକାରା ମହଦାଦୀନି ଦେବ ଦେବଃ ସନାତନଃ ।।୩୧**
**ସ ଏବ ବନ୍ଧଃ ସ ଚ ବନ୍ଧକର୍ତ୍ତା ସ ଏବ ପାଶଃ ପଶୁଭୃତ୍ସ ଏବ ।**
**ସ ବେଦ ସର୍ବଂ ନ ଚ ତସ୍ୟ ବେତ୍ତା ତମାହୁରାଦ୍ୟଂ ପୁରୁଷଂ ପୁରାଣମ୍ ।।୩୨**

ପ୍ରଧାନ, ମୂଳପ୍ରକୃତି ପୁରୁଷ ତଥା ମହଦାଦି ବିକାର ସବୁ ପରମାତ୍ମା ଏବଂ ସନାତନ । ସେ ହିଁ ବନ୍ଧ, ସେ ହିଁ ବନ୍ଧକର୍ତ୍ତା ଏବଂ ପାଶ ଏବଂ ପଶୁମାନଙ୍କୁ ପୋଷଣ କର୍ତ୍ତା ଅଟେ । ସେ ହିଁ ସମସ୍ତଙ୍କୁ ଜାଣିଥାଏ । ଏହାକୁ ଜାଣିଲାବାଲା ଏହାଙ୍କଠାରୁ ଭିନ୍ନ ଆଉ କେହି ନୁହଁନ୍ତି । ଏହାଙ୍କୁ ହିଁ ଆଦ୍ୟ, ପୁରାଣ ଏବଂ ପୁରୁଷ ମଧ୍ୟ କୁହାଯାଏ ।

ଇତି ଶ୍ରୀକୂର୍ମପୁରାଣେ ଉତ୍ତରାର୍ଦ୍ଧେ ଈଶ୍ୱରଗୀତାସୁ ଉପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଋଷିବ୍ୟାସସଂବାଦେ ସପ୍ତମୋଽଧ୍ୟାୟଃ ।

---*---

# ଅଷ୍ଟମ ଅଧ୍ୟାୟ

## ବ୍ରହ୍ମଯୋଗାଧ୍ୟାୟ

*(ଏହି ଅଧ୍ୟାୟରେ ବ୍ରହ୍ମନିରୂପଣ କରାଯାଇଛି । ତେଣୁ ଏହି ଅଧ୍ୟାୟର ନାମ ବ୍ରହ୍ମଯୋଗାଧ୍ୟାୟ କୁହାଯାଇଛି ।)*

**॥ ଈଶ୍ୱର ଉବାଚ ॥**

**ଅନ୍ୟଦ୍‌ଗୁହ୍ୟତମଂ ଜ୍ଞାନଂ ବକ୍ଷ୍ୟେ ବ୍ରାହ୍ମଣପୁଙ୍ଗବାଃ ।**
**ଯେନାସୌ ତରତେ ଜନ୍ତୁର୍ଘୋରଂ ସଂସାରସାଗରମ୍ ॥୧**
**ଅହଂ ବ୍ରହ୍ମମୟଃ ଶାନ୍ତଃ ଶାଶ୍ୱତୋ ନିର୍ମଳୋଽବ୍ୟୟଃ ।**
**ଏକାକୀ ଭଗବାନୁକ୍ତ କେବଳଃ ପରମେଶ୍ୱରଃ ॥୨**

ହେ ବ୍ରାହ୍ମଣ ! ହେ ଶ୍ରେଷ୍ଠ ମୁନିଗଣ ! ପୂର୍ବାଧ୍ୟାୟରେ କଥିତ ଜ୍ଞାନର ବିଲକ୍ଷଣ ଜ୍ଞାନ ମୁଁ ସବୁ ବର୍ତ୍ତମାନ ଆପଣଙ୍କୁ ଶୁଣାଉଛି । ଏହି ଜ୍ଞାନ ଏପରି ଯାହାକୁ ଜାଣିକରି ଜୀବ ଘୋର ସଂସାର ସାଗରରୁ ପରିତ୍ରାଣ ହୋଇଯିବ । ମୁଁ ସବୁଠାରୁ ବଡ଼ ଶାନ୍ତ, ସନାତନ, ନିର୍ମଳ, ଅବିକାରୀ, ଏକ ଭଗବାନ୍ ଏବଂ ପରମେଶ୍ୱର ସ୍ୱରୂପ ଭାବରେ ଶାସ୍ତ୍ରରେ ପ୍ରତିପାଦିତ ହୋଇଛି ।

**ମମ ଯୋନିର୍ମହଦ୍‌ବ୍ରହ୍ମ ତତ୍ର ଗର୍ଭଂ ଦଧାମ୍ୟହମ୍ ।**
**ମୂଳମାୟାଭିଧାନନ୍ତଂ ତତୋ ଜାତମିଦଂ ଜଗତ୍ ॥୩**
**ପ୍ରଧାନଂ ପୁରୁଷୋ ହ୍ୟାତ୍ମା ମହଦ୍‌ଭୂତାଦିରେବ ଚ ।**
**ତନ୍ମାତ୍ରାଣି ମନୋଭୂତାନୀନ୍ଦ୍ରିୟାଣି ଚ ଜଜ୍ଞିରେ ॥୪**
**ତତୋଽଣ୍ଡମଭବଦ୍ଧୈମମର୍କକୋଟିସମପ୍ରଭମ୍ ।**
**ତସ୍ମିନ୍‌ଜଜ୍ଞେ ମହାବ୍ରହ୍ମା ମଚ୍ଛକ୍ତ୍ୟା ଚୋପବୃଂହିତଃ ॥୫**

ମୋର ମାୟା ଯାହାକୁ ତ୍ରିଗୁଣାତ୍ମକ ପ୍ରକୃତି ମଧ୍ୟ କହନ୍ତି । ତାହା ସମସ୍ତ ଭୂତର କାରଣ ଅଟେ । ଏହାକୁ ମହଦ୍ ବୋଲି କୁହାଯାଏ, କାରଣ ସବୁ କାର୍ଯ୍ୟ ମହଦ୍‌ଗୁଣ ବିଶିଷ୍ଟ ଅଟେ । ଏହି ମହଦ୍ ବ୍ରହ୍ମରୂପ ଯୋନିରେ ସମସ୍ତ ଭୂତର କାରଣ ହିରଣ୍ୟଗର୍ଭର ଜନ୍ମର ବୀଜ କୁହାଯାଏ । ଏହା ମଧ୍ୟରେ ଏହି ଜଗତ୍ ଉତ୍ପନ୍ନ ହୋଇଥାଏ । ଏଣୁ ଏହି ମାୟାକୁ ହିଁ କାର୍ଯ୍ୟ କୁହାଯାଏ । ମାୟା ଏହାର ମୂଳ ଅଟେ । ପ୍ରଧାନ ପୁରୁଷାତ୍ମା ମହଦ୍ ଯିଏ ସମସ୍ତ ଭୂତର ଆଦି ଆରମ୍ଭରେ ପ୍ରକଟ

ହୁଏ ତନ୍ମାତ୍ରା (ଶବ୍ଦ ତନ୍ମାତ୍ରା, ରୂପ ତନ୍ମାତ୍ରା, ରସ ତନ୍ମାତ୍ରା, ସ୍ପର୍ଶ ତନ୍ମାତ୍ରା ଓ ଗନ୍ଧ ତନ୍ମାତ୍ରା) ମନ, ସ୍ଥୁଳ ପଞ୍ଚମହାଭୂତ ଓ ଇନ୍ଦ୍ରିୟ ପଶ୍ଚାତ କ୍ରମରେ ଉତ୍ପନ୍ନ ହୁଅନ୍ତି । କୋଟିସୂର୍ଯ୍ୟା ସମାନ ପ୍ରଭାବଶାଳୀ ହିରନ୍ମୟ ଅଣ୍ଡର ଆବିର୍ଭାବ ହୋଇଥାଏ । ଏହା ମଧ୍ୟରେ ମହାବ୍ରହ୍ମା ମୋ ଶକ୍ତିଦ୍ୱାରା ସଂଯୁକ୍ତ ହୋଇ ପ୍ରକଟ ହୋଇଥାନ୍ତି ।

**ଯେ ଚାନ୍ୟେ ବହବୋ ଜୀବାସ୍ତନ୍ମୟାଃ ସର୍ବ ଏବ ତେ ।**
**ନମାଂ ପଶ୍ୟନ୍ତି ପିତରଂ ମାୟୟା ମମ ମୋହିତାଃ ॥୬**
**ଯାସୁ ଯୋନିଷୁ ତାଃ ସର୍ବାଃ ସମ୍ଭବନ୍ତୀହ ମୂର୍ତ୍ତୟଃ ।**
**ତାଂ ମାତରଂ ପରାଂ ଯୋନିଂ ମାମେବ ପିତରଂ ବିଦୁଃ ॥୭**
**ଯୋ ମାମେବଂ ବିଜାନାତି ବୀଜିନଂ ପିତରଂ ପ୍ରଭୁମ୍ ।**
**ସ ବୀରଃ ସର୍ବଲୋକେଷୁ ନ ମୋହମଧିଗଚ୍ଛତି ॥୮**

ନାନା ପ୍ରକାରର ଯେତେ ଜୀବ ଦେଖାଯାଉଛନ୍ତି, ଏସବୁ ତନ୍ମୟ ଅର୍ଥାତ୍ ପ୍ରକୃତିମୟ ହିଁ ଅଟନ୍ତି । ମୋର ମାୟାଦ୍ୱାରା ମୋହିତ ହୋଇଥିବାରୁ ଜଗତର ପିତା ଭାବରେ ମତେ ଜାଣନ୍ତି ନାହିଁ । ଯେଉଁ ଯୋନିରେ ଏସବୁ ମୂର୍ତ୍ତିକୁ ଧାରଣ କରିଛି । ଏହାକୁ ପରାଯୋନିକୁ ମାତା ତଥା ମତେ ପିତା ବୋଲି କୁହାଯାଏ । ଯେ କେହି ଏହି ପ୍ରକାର ଜଗତର ବୀଜ ପ୍ରଭୁ ଓ ପିତା ସ୍ୱରୂପ ବୋଲି ଜାଣିଥାଏ । ସେହି ବୀରପୁରୁଷ ସମସ୍ତ ଲୋକରେ କୌଣସି ମୋହକୁ ପ୍ରାପ୍ତ ହୁଏ ନାହିଁ ।

**ଈଶାନଃ ସର୍ବବିଦ୍ୟାନାଂ ଭୂତାନାଂ ପରମେଶ୍ୱରଃ ।**
**ଓଁକାରମୂର୍ତ୍ତିର୍ଭଗବାନହଂ ବ୍ରହ୍ମା ପ୍ରଜାପତିଃ ॥୯**
**ସମଂ ସର୍ବେଷୁ ଭୂତେଷୁ ତିଷ୍ଠନ୍ତଂ ପରମେଶ୍ୱରମ୍ ।**
**ବିନଶ୍ୟତ୍ସ୍ୱବିନଶ୍ୟନ୍ତଂ ଯଃ ପଶ୍ୟତି ସ ପଶ୍ୟତି ॥୧୦**
**ସମଂ ପଶ୍ୟନ୍ ହି ସର୍ବତ୍ର ସମବସ୍ଥିତମୀଶ୍ୱରମ୍ ।**
**ନହିନସ୍ତ୍ୟାତ୍ମନାତ୍ମାନଂ ତତୋ ଯାତି ପରାଂ ଗତିମ୍ ॥୧୧**

ସମସ୍ତ ବିଦ୍ୟାମାନଙ୍କର ଈଶ ତଥା ସମସ୍ତ ଭୂତମାନଙ୍କର ପରମେଶ୍ୱର ଓଁକାର ମୂର୍ତ୍ତି ଭଗବାନ୍ ବ୍ରହ୍ମା ପ୍ରଜାପତି ମୁଁ ଅଟେ । ସମସ୍ତ ଭୂତରେ ସମାନ ରୂପରେ ରହି ବିନାଶଶୀଳ ଓ ଅବିନାଶୀ ମୋର ପରମେଶ୍ୱର ସ୍ୱରୂପକୁ ଜାଣିଥାଲ । ସେ ହିଁ ଜ୍ଞାନୀ ଅଟେ । ସେ ସର୍ବତ୍ର ସମଭାବରେ ମୋର ପରମାତ୍ମା ସ୍ୱରୂପକୁ ଦେଖି କୌଣସି ପ୍ରାଣୀ ପ୍ରତି ହିଂସା ଆଚରଣ କରନ୍ତି ନାହିଁ । ଏହିପରି ପୁରୁଷଶ୍ରେଷ୍ଠ ଗତିର ସମର୍ଥ ହୋଇଥାନ୍ତି ।

**ବିଦିତ୍ୱା ସପ୍ତସୂକ୍ଷ୍ମାଣି ଷଡଙ୍ଗଞ୍ଚ ମହେଶ୍ୱରମ୍ ।**
**ପ୍ରଧାନଂ ବିନିଯୋଗଜ୍ଞଃ ପରଂ ବ୍ରହ୍ମାଧିଗଚ୍ଛତି ।।୧୨**
**ସର୍ବଜ୍ଞାତା ତୃପ୍ତିରନାଦିବୋଧଃ ସ୍ୱଚ୍ଛନ୍ଦତା ନିତ୍ୟମଲୁପ୍ତଶକ୍ତିଃ ।**
**ଅନନ୍ତଶକ୍ତିଶ୍ଚ ବିଭୋର୍ବିଦିତ୍ୱା ଷଡାହୁରଙ୍ଗାନି ମହେଶ୍ୱରସ୍ୟ ।।୧୩**

ସାତ ସୂକ୍ଷ୍ମ ଓ ଷଡଙ୍ଗ ସ୍ୱରୂପରେ ଯୁକ୍ତ ମହେଶ୍ୱରଙ୍କୁ ବିନିଯୋଗର ଜ୍ଞାତା ଭାବେ ଜାଣିକରି ପରଂବ୍ରହ୍ମଙ୍କୁ ପ୍ରାପ୍ତ ହୁଅନ୍ତି । ମହେଶ୍ୱରଙ୍କର ଏହି ଷଡ୍ ଅଙ୍ଗ କୁହାଯାଇଛି, ଯଥା- ସର୍ବଜ୍ଞାତା, ତୃପ୍ତି, ଅନାଦିବୋଧ, ସ୍ୱଚ୍ଛନ୍ଦତା ନିତ୍ୟ ଅଲୁପ୍ତ ଶକ୍ତି - ଏହାକୁ ଷଡ ଐଶ୍ୱର୍ଯ୍ୟ ମଧ୍ୟ କୁହାଯାଏ ।

**ତନ୍ମାତ୍ରାଣି ମନ ଆତ୍ମା ଚ ତାନି ସୂକ୍ଷ୍ମାଣ୍ୟାହୁଃ ସପ୍ତ ତତ୍ତ୍ୱାତ୍ମକାନି ।**
**ଯା ସା ହେତୁଃ ପ୍ରକୃତିଃ ସା ପ୍ରଧାନଂ ବନ୍ଧଃ ପ୍ରୋକ୍ତୋ ନିନୟେନାପି ତେନ ।।୧୪**
**ଯା ସା ଶକ୍ତିଃ ପ୍ରକୃତୌ ଲୀନରୂପା ବେଦେଷୂକ୍ତା କାରଣଂ ବ୍ରହ୍ମଯୋନିଃ ।**
**ତସ୍ୟା ଏକଃ ପରମେଷ୍ଠୀ ପୁରସ୍ତାନ୍ମାହେଶ୍ୱରଃ ପୁରୁଷଃ ସତ୍ୟରୂପଃ ।।୧୫**

ପଞ୍ଚତନ୍ମାତ୍ରା, ମନ ଏବଂ ଆତ୍ମା ଏହି ସାତ ତତ୍ତ୍ୱକୁ ସୂକ୍ଷ୍ମତତ୍ତ୍ୱ କୁହାଯାଏ । ଏହାର ହେତୁ ପ୍ରକୃତି ଏହି ପ୍ରଧାନ ଅଟେ । ଏହାଦ୍ୱାରା ପ୍ରାଣୀ ବନ୍ଧନରେ ପଡ଼ିଥାଏ । ଯେଉଁ ଶକ୍ତି ପ୍ରକୃତିରେ ଲୀନ ରହିଥାଏ, ଯାହାକୁ ବେଦର କାରଣ ତଥା ବ୍ରହ୍ମ ଯୋନିରୂପ ବୋଲି କୁହାଯାଇଛି । ତାହାର ସଞ୍ଚାଳକ ଏକ ମହେଶ୍ୱର ସତ୍ୟରୂପ ପରମେଷ୍ଠୀ ମୁଁ ପ୍ରଥମରୁ ରହିଅଛି ।

**ବ୍ରହ୍ମା ଯୋଗୀ ପରମାତ୍ମା ମହୀୟାନ୍ ବ୍ୟୋମବ୍ୟାପୀ ବେଦବେଦ୍ୟଃ ପୁରାଣଃ ।**
**ଏକୋ ରୁଦ୍ରୋ ମୃତ୍ୟୁମବ୍ୟକ୍ତମେକଂ ବୀଜଂ ବିଶ୍ୱଂ ଦେବ ଏକଃ ସ ଏବ ।।୧୬**
**ତମେବୈକଂ ପ୍ରାହୁରନ୍ୟେଽନ୍ୟେନେକଂ ତ୍ୱାମେବାତ୍ମା କେଚିଦନ୍ୟଂ ତମାହୁଃ ।**
**ଅଣୋରଣୀୟାନ୍ମହତୋ ମହୀୟାନ୍ ମହାଦେବଃ ପ୍ରୋଚ୍ୟତେ ବିଶ୍ୱରୂପଃ ।।୧୭**
**ଏବଂ ହି ଯୋ ବେଦ ଗୁହାଶୟଂ ପରଂ ପ୍ରଭୁଂ ପୁରାଣଂ ପୁରୁଷଂ ବିଶ୍ୱରୂପମ୍ ।**
**ହିରଣ୍ମୟଂ ବୁଦ୍ଧିମତାଂ ପରାଙ୍ଗତି ସ ବୁଦ୍ଧିମାନ୍ ବୁଦ୍ଧିମତୀତ୍ୟ ତିଷ୍ଠତି ।।୧୮**

ସମସ୍ତଙ୍କଠାରୁ ବଡ଼ ହୋଇଥିବାରୁ ବ୍ରହ୍ମା ସମସ୍ତ ଭୁତଙ୍କର ସାଥୀରେ ବ୍ୟାପକ ରୂପରେ ଯୋଗ ରଖିଥିବାରୁ ଯୋଗୀ, ଜୀବାତ୍ମାଙ୍କ ମଧ୍ୟ ଉତ୍କୃଷ୍ଟ ହୋଇଥିବାରୁ ପରମାତ୍ମା ଗୁଣବିଶିଷ୍ଟ ହୋଇଥିବାରୁ ମହିୟାନ୍ । ଆକାଶ ପରି ବ୍ୟାପକ, ବେଦରୁ ହିଁ ଜ୍ଞାତବ୍ୟ, ସର୍ବପ୍ରଥମ ହେବାରୁ ଏକମାତ୍ର ପୁରାଣ, ଜଗତକୁ ଲୟ କରିବାରେ ରୁଦ୍ର, ପ୍ରାଣବିୟୋଗାନୁକୂଳ ବ୍ୟାପାରର ନିୟାମକ ହୋଇଥିବାରୁ ମୃତ୍ୟୁ, ସ୍ଥୁଟ ନ

ହୋଇଥିବାରୁ ଅବ୍ୟକ୍ତ, ସମସ୍ତର ମୂଳ କାରଣ ସର୍ବସ୍ୱରୂପ ଏକ ଦେବ । ଏହାକୁ ସବୁ ରୂପରେ କୁହାଯାଇଛି । ଏହି ଏକ ପରମାତ୍ମାଙ୍କୁ କେହି କେହି ଅନେକ ମଧ୍ୟ କହିଥାନ୍ତି । ସେ ହିଁ ପୃଥକ୍ ପୃଥକ୍ ନାମରେ ସମସ୍ତ ବ୍ୟାପାର କରିଥାନ୍ତି । ଅଣୁଠାରୁ ମଧ୍ୟ ଅଣୁ, ବୃହତ୍‌ଠାରୁ ମଧ୍ୟ ବୃହତ୍ ମହିୟାନ୍ ବିଶ୍ୱରୂପାତ୍ମକ ମହାଦେବ ଶାସ୍ତ୍ରରେ ପ୍ରତିପାଦିତ ହୋଇଥାଆନ୍ତି । ଏହି ଭାବ ଉପନିଷଦରେ ମଧ୍ୟ କୁହାଯାଇଛି- ''ଅଣୋରଣୀୟାନ୍ ମହତୋ ମହୀୟାନ୍ ଆତ୍ମନଃ ଜନ୍ତୁର୍ନିହିତୋ ଗୁହାୟାଂ ତମକ୍ରତୁଃ ପଶ୍ୟତି ବିତଶୋକୋ ଧାତୁଃ ପ୍ରସାଦାତ୍ ମହିମାନମାତ୍ମନଃ'' (କ.ଉ. ୧/୨୦) । ଅର୍ଥାତ୍ ଆତ୍ମା ଦେବ କ୍ଷୁଦ୍ରଠାରୁ ମଧ୍ୟ କ୍ଷୁଦ୍ରତମ, ବୃହତ୍‌ଠାରୁ ମଧ୍ୟ ବୃହତ୍ତମ । ଏହା ବୁଦ୍ଧିରୂପ ଗୁହାରେ ପ୍ରକାଶିତ ହୋଇଥାଏ । ସଙ୍କଳ୍ପଶୂନ୍ୟ, ବିତଶୋକ ପୁରୁଷ ହିଁ ଧାତୁମାନଙ୍କର ବିକାରଶୂନ୍ୟ ହୋଇ ଏହାର ମହିମାକୁ ଦେଖିପାରନ୍ତି । ଏହିପ୍ରକାର ବୁଦ୍ଧିରୂପ ଗୁହାରେ ବିଦ୍ୟମାନ ଉତ୍କୃଷ୍ଟ, ଅନନ୍ତ ପ୍ରଭାବଶାଳୀ ପୁରାଣ, ବିଶ୍ୱରୂପ ହିରଣ୍ମୟ ସ୍ୱରୂପୀ ତଥା ବୁଦ୍ଧିମାନଙ୍କର ପରମଗତି ସ୍ୱରୂପକୁ ଯେଉଁ ବୁଦ୍ଧିମାନ୍ ଜାଣିଥାନ୍ତି, ସେ ହିଁ ବୁଦ୍ଧିକୁ ଅତିକ୍ରମଣ କରିପାରିଥାଏ । ଅର୍ଥାତ୍ ଜନ୍ମମରଣାଦି ଦୁଃଖ ଶୂନ୍ୟ ହୋଇ ଯାଇଥାଏ ।

ଇତି ଶ୍ରୀକୂର୍ମପୁରାଣେ ଉତ୍ତରାର୍ଦ୍ଧେ ଈଶ୍ୱରଗୀତାସୁ ଉପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଋଷିବ୍ୟାସସଂବାଦେ ଅଷ୍ଟମୋଽଧ୍ୟାୟଃ ।

---*---

# ନବମ ଅଧ୍ୟାୟ

## ଜ୍ଞାନଯୋଗାଧ୍ୟାୟ

*(ଏହି ଅଧ୍ୟାୟରେ ଜ୍ଞାନଯୋଗର ମହତ୍ତ୍ୱ ବର୍ଣ୍ଣନା କରାଯାଇଛି । ଏଣୁ ଏହି ଅଧ୍ୟାୟର ନାମ ଜ୍ଞାନଯୋଗାଧ୍ୟାୟ କୁହାଯାଇଛି ।)*

**।। ଋଷି ଉବାଚ ।।**

**ନିଷ୍କଲୋ ନିର୍ମଲୋ ନିତ୍ୟୋ ନିଷ୍କ୍ରିୟଃ ପରମେଶ୍ୱରଃ ।**
**ତତୋ ବଦ ମହାଦେବ ବିଶ୍ୱରୂପଃ କଥଂ ଭବାନ୍ ।।୧**

**।। ଈଶ୍ୱର ଉବାଚ ।।**

**ନାହଂ ବିଶ୍ୱୋ ନ ବିଶ୍ୱଞ୍ଚ ମାମୃତେ ବିଦ୍ୟତେ ଦ୍ୱିଜାଃ ।**
**ମାୟା ନିମିତ୍ତମାତ୍ରାସ୍ତି ସା ଚାତ୍ମନି ମୟାଶ୍ରିତା ।।୨**
**ଅନାଦିନିଧନା ଶକ୍ତିର୍ମାୟା ବ୍ୟକ୍ତିସମାଶ୍ରୟ ।**
**ତନ୍ନିମିତ୍ତଃ ପ୍ରପଞ୍ଚୋଽୟବ୍ୟକ୍ତାଜ୍ଜାୟତେ ଖଳୁ ।।୩**

ପୂର୍ବାଧ୍ୟାୟର ନିରୂପଣ ପରେ ଶ୍ରୀଶଙ୍କର କିଛିକାଳ ପର୍ଯ୍ୟନ୍ତ ମୌନ ଅବସ୍ଥାରେ ଅବସ୍ଥିତ ରହିଲେ । ଏହାପରେ ଋଷିମାନେ ପଚାରିଲେ ହେ ଭଗବାନ୍ ! ନିଷ୍କଳ ଅର୍ଥାତ୍ ଅଂଶ ଶୂନ୍ୟ, ନିର୍ମଳ, ନିତ୍ୟକ୍ରିୟା ଶୂନ୍ୟ ପରମେଶ୍ୱରଙ୍କ ସ୍ୱରୂପ ଆପଣ ବର୍ଣ୍ଣନା କଲେ । ଏହା ଶୁଣି ଆମ୍ଭମାନଙ୍କୁ ଏହି ଶଙ୍କା ହେଉଛି ଯେ ଆପଣ ବିଶ୍ୱରୂପ କି ପ୍ରକାର ହେଲେ । ଋଷିମାନଙ୍କର ଏହି ପ୍ରଶ୍ନକୁ ଶୁଣିକରି ଭୂତଭାବନ ଭଗବାନ୍ ଭାବଗମ୍ଭୀର ବାଣୀରେ କହିଲେ ହେ ବ୍ରାହ୍ମଣ ! ମୁଁ ବିଶ୍ୱ ନୁହେଁ କିମ୍ୱା ବିଶ୍ୱ ମୋ ବିନା ରହିପାରିବ ନାହିଁ । ଏହି ବିଶ୍ୱ ମାୟା ନିମିତ୍ତକ ଅଟେ । ଆଉ ମାୟା ମୋର ଆଶ୍ରୟରେ ରହି ଆତ୍ମାରେ ଅଭିନ୍ନ ରୂପରେ ଥାଏ । ଏହି ମାୟାଶକ୍ତି ଆଦି ଅନ୍ତଶୂନ୍ୟ ସ୍ଥୁଳ ଜଗତକୁ ଉତ୍ପନ୍ନ କରେ । ଏହା ନିମିତ୍ତ ହିଁ ଏହି ଦୃଶ୍ୟମାନ ଜଗତ୍ ଅବ୍ୟକ୍ତରେ ଆବିର୍ଭୂତ ହୋଇଥାଏ ।

**ଅବ୍ୟକ୍ତଂ କାରଣ ପ୍ରାହୁରାନନ୍ଦଂ ଜ୍ୟୋତିରକ୍ଷରମ୍ ।**
**ଅହମେବ ପରଂ ବ୍ରହ୍ମ ମତ୍ତୋ ହ୍ୟନ୍ୟନ୍ନ ବିଦ୍ୟତେ ।।୪**
**ତସ୍ମାନ୍ମେ ବିଶ୍ୱରୂପତ୍ୱଂ ନିଶ୍ଚିତଂ ବ୍ରହ୍ମବାଦିଭିଃ ।**
**ଏକତ୍ୱେ ତ ପୃଥକ୍ତ୍ୱେ ଚ ପ୍ରୋକ୍ତମେତନ୍ନିଦର୍ଶନମ୍ ।।୫**

**ଅହଂ ତତ୍ପରମଂ ବ୍ରହ୍ମ ପରମାତ୍ମା ସନାତନଃ ।**
**ଅକାରଣଂ ଦ୍ୱିଜା ପ୍ରୋକ୍ତାଃ ନ ଦୋଷୋ ହ୍ୟାତ୍ମନସ୍ତଥା ।।୬**

ଅକ୍ଷରଜ୍ୟୋତିଃ ସ୍ୱରୂପ ଅବ୍ୟକ୍ତ (ଶକ୍ତିତତ୍ତ୍ୱ)ର କାରଣ କୁହାଯାଏ । ଆନନ୍ଦସ୍ୱରୂପ ଅହଂ ପଦର ବାଚ୍ୟ ମୁଁ ପରବ୍ରହ୍ମ ହିଁ ସବୁକିଛି ଅଟେ । ମୋଠାରୁ ଅନ୍ୟ ଆଉ କେହି ନାହିଁ । ଏଣୁ ବ୍ରହ୍ମବେତ୍ତାମାନେ ମୋର ସ୍ୱରୂପକୁ ବିଶ୍ୱରୂପ ବୋଲି ନିଶ୍ଚିତ କରିଥାଆନ୍ତି । ଏକତ୍ୱ ଏବଂ ଭିନ୍ନତ୍ୱରେ ଏହା ଉଦାହରଣ ଦିଆଯାଇପାରେ ଯେ କାରଣ ରୂପରେ ମୁଁ ଏକ କାର୍ଯ୍ୟରୂପରେ ମୁଁ ନାନାରୂପ ହୋଇଯାଏ । ଏହି ବିଷୟରେ ଶ୍ରୁତିରେ ମଧ୍ୟ ପ୍ରମାଣ ଅଛି ଯଥା- 'ବାୟୁହ୍ୟର୍ୈକୋ ଭୁବନଂ ପ୍ରବିଷ୍ଟୋ ରୂପଂ ରୂପଂ ପ୍ରତିରୂପଂ ବଭୂବ ଏକସ୍ତଥା ସର୍ବଭୂତାନ୍ତରାତ୍ମା ରୂପଂ ରୂପଂ ପ୍ରତିରୂପୋ ବହିଶ୍ଚ'' ଅର୍ଥାତ୍ ବାୟୁ ପରି ସମାନ ଏକ ହୋଇ ନାନାପ୍ରକାର ବସ୍ତୁ ସହ ନାନା ରୂପରେ ପ୍ରତୀତି ହୋଇଥାଏ, ସେହିପରି ଆତ୍ମା ମଧ୍ୟ ଏକ ହୋଇ ନାନାରୂପ ହୋଇଥାଏ । ହେ ବ୍ରାହ୍ମଣ ! ମୁଁ ହିଁ ପରଂବ୍ରହ୍ମ, ପରମାତ୍ମା, ସନାତନ ଅଟେ । ପରମାର୍ଥରେ ମୁଁ କାହାର କାରଣ ନୁହେଁ । ଆତ୍ମାରେ ମଧ୍ୟ କୌଣସି ପ୍ରକାରର ଦୋଷ ନଥାଏ । ଯଦି ସ୍ୱଭାବତଃ କୌଣସି ଦୋଷ ହୋଇଥାଏ, ତେବେ ତାହାର ନିବୃତ୍ତି ହୁଏ ନାହିଁ ଏବଂ ଆତ୍ମାରେ ଶୁଦ୍ଧତ୍ୱର ଧର୍ମର ବ୍ୟାଘାତ ହୋଇଥାଏ ।

**ଅନନ୍ତାଃ ଶକ୍ତୟୋଽବ୍ୟକ୍ତା ମାୟୟା ସଂସ୍ଥିତା ଧ୍ରୁବାଃ ।**
**ତସ୍ମିନ୍ ଦିବି ସ୍ଥିତଂ ନିତ୍ୟମବ୍ୟକ୍ତଂ ଭାତି କେବଳମ୍ ।।୭**
**ଅଭିନ୍ନଂ ବକ୍ଷ୍ୟତେ ଭିନ୍ନଂ ବ୍ରହ୍ମାବ୍ୟକ୍ତଂ ସନାତନମ୍ ।**
**ଏକୟା ମାୟୟା ଯୁକ୍ତମନାଦିନିଧନଂ ଧ୍ରୁବମ୍ ।।୮**
**ପୁଂସୋଽନ୍ୟାଭୂଦ୍ୟଥା ଭୂତିରନ୍ୟଥା ନ ତିରୋହିତମ୍ ।**
**ଅନାଦିମଧ୍ୟନ୍ତିଷ୍ଠନ୍ତେ ଚେଷ୍ଟତେ ବିଦ୍ୟୟା କିଳ ।।୯**
**ତଦେତତ୍ପରମବ୍ୟକ୍ତଂ ପ୍ରଭାମଣ୍ଡଳମଣ୍ଡିତମ୍ ।**
**ତଦକ୍ଷରଂ ପରଂ ଜ୍ୟୋତିସ୍ତଦ୍ୱିଷ୍ଣୋଃ ପରମଂ ପଦମ୍ ।।୧୦**

ଅନନ୍ତ ଅବ୍ୟକ୍ତ ଶକ୍ତି ନିଶ୍ଚଳ ଭାବରେ ମାୟାରେ ରହିଥାଏ । ଦ୍ୟୋତନାତ୍ମକ ଦିବଲୋକରେ ଏହି ଶକ୍ତି ଭାବରେ ଅଭିନ୍ନ ଥାଏ । ନିତ୍ୟ, ଅବ୍ୟକ୍ତ କେବଳ, ପରମାତ୍ମା ପ୍ରକାଶିତ ହୋଇଥାଏ । ଏକ ମାୟାରୁ ମୁକ୍ତ, ଆଦିଅନ୍ତଶୂନ୍ୟ, ଅବ୍ୟକ୍ତ ସନାତନ ବ୍ରହ୍ମ ଅଭିନ୍ନ (ଅଦ୍ୱୈତ) ହୋଇ ମଧ୍ୟ ଭିନ୍ନ ରୂପରେ ବ୍ୟବହୃତ ହୋଇଥାଏ । ଯେପରି ପୁରୁଷର ସାମର୍ଥ୍ୟ ତାହାଠାରୁ ଭିନ୍ନ କୁହାଯାଇଥାଏ, ପରନ୍ତୁ

ବାସ୍ତବରେ ଅଭିନ୍ନ ଅଟେ । ସେହିପରି ବ୍ରହ୍ମ ମଧ୍ୟ । ଏହି ବ୍ରହ୍ମ ଅନାଦି ହୋଇ ମଧ୍ୟ କାଳରେ ସ୍ଥିତ ଜଗତକୁ ନିଜର ବିଦ୍ୟାଶକ୍ତିଦ୍ୱାରା ବ୍ୟାପାରବାନ୍ ହୋଇଥାଏ ଅଥବା ଅବିଦ୍ୟା ବା ମାୟାରେ ସମସ୍ତ କାର୍ଯ୍ୟର ସଞ୍ଚାଳନ ହୋଇଥାଏ । ଏହି ବ୍ରହ୍ମ ପରମ ଅବ୍ୟକ୍ତ ଏବଂ ପ୍ରଭାମଣ୍ଡଳରେ ସୁଶୋଭିତ ଅଟେ । ଏବଂ ଅକ୍ଷର ପରମ ଜ୍ୟୋତିଃସ୍ୱରୂପ ଏହାକୁ ବିଦ୍ୱାନ୍‌ମାନେ ବିଷ୍ଣୁଙ୍କର ପରମପଦ କହିଥାନ୍ତି ।

**ତତ୍ର ସର୍ବମିଦଂ ପ୍ରୋତମୋତଂ ଚୈବାଖିଳଂ ଜଗତ୍ ।**
**ତଦେବେଦଂ ଜଗତ୍କୃତ୍ସ୍ନଂ ତଦ୍‌ବିଜ୍ଞାୟ ବିମୁଚ୍ୟତେ ॥୧୧**
**ଯତୋ ବାଚୋ ନିବର୍ତ୍ତନ୍ତେ ଅପ୍ରାପ୍ୟ ମନସା ସହ ।**
**ଆନନ୍ଦଂ ବ୍ରହ୍ମଣୋ ବିଦ୍ୱାନ୍ ନ ବିଭେତି କୁତଶ୍ଚନ ॥୧୨**
**ବେଦାହମେତଂ ପୁରୁଷଂ ମହାନ୍ତମାଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍ ।**
**ତଂ ବିଜ୍ଞାୟ ପରିମୁଚ୍ୟତେ ବିଦ୍ୱାନ୍ନିତ୍ୟାନନ୍ଦୀଭବତି ବ୍ରହ୍ମଭୂତଃ ॥୧୩**
**ଅସ୍ମାତ୍ପରଂ ନାପରମସ୍ତି କିଞ୍ଚିଦ୍ୟଜ୍ଜ୍ୟୋତିଷାଂ ଜ୍ୟୋତିରେକଂ ଦିବିସ୍ଥମ୍ ।**
**ତଦେବାତ୍ମାନଂ ମନ୍ୟମାନୋଽଥ ବିଦ୍ୱାନାତ୍ମାନନ୍ଦୀଭବତି ବ୍ରହ୍ମଭୂତଃ ॥୧୪**

ସେହି ପରମପଦ ନାମକ ପରମ ସ୍ଥାନରେ ଏହି ସମସ୍ତ ଜଗତ୍ ଓତପ୍ରୋତ ହୋଇ ରହିଥାଏ । ଯେପରି ବସ୍ତ୍ରରେ ତନ୍ତୁ, ତନ୍ତୁରୁ ପୃଥକ୍ ରୂପରେ ବସ୍ତ୍ର କୌଣସି ବସ୍ତ୍ର ନୁହେଁ । ଏହିପରି ଏହି ଜଗତରେ ମଧ୍ୟ ବ୍ରହ୍ମ ରୂପାତ୍ମକ ଅଟେ । ଏହାକୁ ଜାଣିଥିବା ମନୁଷ୍ୟ ସଂସାର ବନ୍ଧନରୁ ମୁକ୍ତ ହୋଇଥାଏ । ଯେଉଁ ସ୍ଥାନକୁ ବାଣୀ ଯାଇ ନପାରି ମନ ସହ ଲେଉଟି ଆସେ ସେହି ବ୍ରହ୍ମାନନ୍ଦକୁ ଜାଣି ବିଦ୍ୱାନ୍ କାହାକୁ ଦେଖି ଭୟଭୀତ ହୁଅନ୍ତି ନାହିଁ । ଶ୍ରୁତି ଆଗରେ ମନ୍ତ୍ରର ସାଧକଙ୍କ ପାଇଁ 'ଅହଂ' ପ୍ରତ୍ୟୟର ଉପଦେଶ ଅଛି – 'ତମସେ ପରେ ଆଦିତ୍ୟବର୍ଣ୍ଣ ମହାନ୍ ଆତ୍ମାକୁ ମୁଁ ଜାଣିଅଛି ।' ସେହି ଆତ୍ମାକୁ ଜାଣିକରି ପୁରୁଷ ମୁକ୍ତ ହୋଇଯାଇଥାଏ ଏବଂ ବ୍ରହ୍ମଭୂତ ବିଦ୍ୱାନ୍ ନିତ୍ୟାନନ୍ଦୀ ହୋଇଯାଇଥାଏ । ଏହି ତତ୍ତ୍ୱରୁ ଶ୍ରେଷ୍ଠ ଆଉ କୌଣସି ତତ୍ତ୍ୱ ନାହିଁ । ଯିଏ ପ୍ରକାଶାତ୍ମକ ଦିବ୍ୟଲୋକସ୍ଥିତ ଏବଂ ଜ୍ୟୋତିମାନଙ୍କରେ ଜ୍ୟୋତି ଅଟେ । ଏହାକୁ ହିଁ ଆତ୍ମରୂପ ବୋଲି ବିଦ୍ୱାନ୍‌ମାନେ ଜାଣନ୍ତି । ବ୍ରହ୍ମଭୂତ ହୋଇ ଆତ୍ମାନନ୍ଦୀ ହୋଇଯାଆନ୍ତି ।

**ତଦପ୍ୟହଂ କଳିଳଂ ଗୂଢଦେହଂ ବ୍ରହ୍ମାନନ୍ଦମମୃତଂ ବିଶ୍ୱଧାମା ।**
**ବଦନ୍ତ୍ୟେବଂ ବ୍ରାହ୍ମଣା ବ୍ରହ୍ମନିଷ୍ଠା ଯତ୍ର ଗତ୍ୱା ନ ନିବର୍ତ୍ତନ୍ତି ଭୂୟଃ ॥୧୫**
**ହିରଣ୍ମୟେ ପରମାକାଶତତ୍ତ୍ୱେ ଯଦ୍‌ବୈ ଦିବି ବିପ୍ରତିଭାତୀବ ତେଜଃ ।**
**ତଦ୍‌ବିଜ୍ଞାନେ ପରିପଶ୍ୟନ୍ତି ଧୀରା ବିଭ୍ରାଜମାନଂ ବିମଳଂ ବ୍ୟୋମଧାମ ॥୧୬**

ଯଦ୍ୟପି ମୁଁ ପୂର୍ବୋକ୍ତ ଲକ୍ଷଣଦ୍ୱାରା ଲକ୍ଷିତ ଅଟେ ତଥାପି ପ୍ରପଞ୍ଚର ବିନାଶକ, ମୃତ୍ୟୁସ୍ୱରୂପୀ ବ୍ରହ୍ମାନନ୍ଦ, ଅମୃତ ଏବଂ ବିଶ୍ୱଧାମାତ୍ମକ ଅଟେ ବୋଲି ବ୍ରହ୍ମନିଷ୍ଠ ବ୍ରାହ୍ମଣଗଣ ପ୍ରତିପାଦନ କରିଥାଆନ୍ତି । ଯେଉଁଠାକୁ ଯାଇ ଜୀବ ପୁନର୍ବାର ସଂସାରକୁ ଫେରିଆସେ ନାହିଁ । ପରମାକାଶ ତତ୍ତ୍ୱ ଏବଂ ହିରଣ୍ମୟ ସ୍ୱରୂପ ଦିବଲୋକରେ ଏହି ତେଜ ସ୍ୱତଃ ପ୍ରକାଶିତ ହୋଇଥାଏ । ଏହା ବିମଳ ଆକାଶ ସଦୃଶ ବ୍ୟାପକ, ପରମତେଜକୁ ବୁଦ୍ଧିମାନ୍ ଲୋକ ବିଜ୍ଞାନଦ୍ୱାରା ଜାଣନ୍ତି ।

**ତତଃ ପରଶ୍ଚରି ପଶ୍ୟନ୍ତି ଧୀରା ଆତ୍ମନ୍ୟାତ୍ମନମନୁଭୂୟ ସାକ୍ଷାତ୍ ।**
**ସ୍ୱୟଂ ପ୍ରଭୁଃ ପରମେଷ୍ଠୀ ମହୀୟାନ୍ ବ୍ରହ୍ମାନନ୍ଦୀ ଭଗବାନୀଶ ଏଷଃ ॥୧୭**
**ଏକୋ ଦେବଃ ସର୍ବଭୂତେଷୁ ଗୂଢଃ ସର୍ବବ୍ୟାପୀ ସର୍ବଭୂତାନ୍ତରାତ୍ମା ।**
**ତମେବୈକଂ ଯେଽନୁପଶ୍ୟନ୍ତି ଧୀରାସ୍ତେଷାଂ ଶାନ୍ତିଃ ଶାଶ୍ୱତୀ ନେତରେଷାମ୍ ॥୧୮**

ନାମରୂପାତ୍ମକ ଜଗତରୁ ଶ୍ରେଷ୍ଠ ବିଦ୍ୱାନ୍ ଲୋକମାନେ ଆତ୍ମାରେ ହିଁ ଆତ୍ମାକୁ ସାକ୍ଷାତ୍ ଅନୁଭୁତି କରି ତାହାକୁ ସର୍ବଦା ଦେଖୁଥାଆନ୍ତି। ଏହି ଭଗବାନ୍ ସ୍ୱୟଂ ପ୍ରଭାବଶାଳୀ, ପରମେଷ୍ଠୀ, ମହାନ୍ ବ୍ରାହ୍ମାନନ୍ଦୀ, ଈଶ ଆଦି ସଂଜ୍ଞାରେ କୁହାଯାଏ । ଏକ ଦେବ ସର୍ବଭୂତରେ ରହି ସର୍ବବ୍ୟାପୀ ଏବଂ ସମସ୍ତ ଭୂତର ଅନ୍ତରାତ୍ମା ଅଟେ । ଏହାକୁ ଯେଉଁ ବିଦ୍ୱାନ୍ ଏପରି ଦେଖନ୍ତି, ତାହାକୁ ବାସ୍ତବିକ ପ୍ରକୃତ ଶାନ୍ତି ମିଳିଥାଏ ଅନ୍ୟକୁ ନୁହେଁ ।

**ସର୍ବାନନଶିରୋଗ୍ରୀବଃ ସର୍ବଭୂତ ଗୁହାଶୟଃ ।**
**ସର୍ବବ୍ୟାପୀ ସ ଭଗବାନ୍ତସ୍ମାଦନ୍ୟନ୍ନ ବିଦ୍ୟତେ ॥୧୯**
**ଇତ୍ୟେତଦୀଶ୍ୱରଜ୍ଞାନମୁକ୍ତଂ ବୋ ମୁନିପୁଙ୍ଗବାଃ ।**
**ଗୋପନୀୟଂ ବିଶେଷେଣ ଯୋଗିନାମପି ଦୁର୍ଲଭମ୍ ॥୨୦**

ଏହି ପରମାତ୍ମା ସମସ୍ତଙ୍କର ମୁଖ, ଶିର ଗ୍ରୀବାବାଲା ଅଟନ୍ତି ତଥା ସମସ୍ତ ଭୂତର ବୁଦ୍ଧିରୂପୀ ଗୁହାରେ ରହିଥାଏ । ସେହି ଭଗବାନ୍ ସର୍ବବ୍ୟାପୀ କୁହାଯାଏ । ଏହାଙ୍କଠାରୁ ଭିନ୍ନ ଅନ୍ୟ କେହି ନାହାନ୍ତି । ହେ ମୁନିଶ୍ରେଷ୍ଠ ଏହି ଈଶ୍ୱରୀୟ ଜ୍ଞାନ ମୁଁ ଆପଣମାନଙ୍କୁ ଶୁଣାଇଲି । ଏହାକୁ ଅତ୍ୟନ୍ତ ଗୁପ୍ତ ରଖିବ କାରଣ ଏହା ଯୋଗୀମାନଙ୍କର ମଧ୍ୟ ଦୁର୍ଲଭ ଅଟେ ।

ଇତି ଶ୍ରୀକୂର୍ମପୁରାଣେ ଉତ୍ତରାର୍ଦ୍ଧେ ଈଶ୍ୱରଗୀତାସୁ ଉପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଋଷିବ୍ୟାସସଂବାଦେ ନବମୋଽଧ୍ୟାୟଃ ।

---*---

# ଦଶମ ଅଧ୍ୟାୟ

## ଜ୍ଞାନଯୋଗାଧ୍ୟାୟ

*(ଏହି ଅଧ୍ୟାୟରେ ଅଦ୍ୱୈତତତ୍ତ୍ୱର ନିରୂପଣ କରାଯାଇଛି । ଏଣୁ ଏହି ଅଧ୍ୟାୟକୁ ଜ୍ଞାନଯୋଗାଧ୍ୟାୟ କୁହାଯାଇଛି ।)*

॥ ଈଶ୍ୱର ଉବାଚ ॥

ଅଲିଙ୍ଗମେକମବ୍ୟକ୍ତଂ ଲିଙ୍ଗଂ ବ୍ରହ୍ମେତି ନିଷ୍ଚିତମ୍ ।
ସ୍ୱୟଂ ଜ୍ୟୋତିଃ ପରଂ ତତ୍ତ୍ୱଂ ପୂର୍ବଂ ବ୍ୟୋମ୍ନି ବ୍ୟବସ୍ଥିତମ୍ ॥୧
ଅବ୍ୟକ୍ତଂ କାରଣଂ ଯତ୍ତଦକ୍ଷରଂ ପରମଂ ପଦମ୍ ।
ନିର୍ଗୁଣଂ ସିଦ୍ଧି ବିଜ୍ଞାନଂ ତଦ୍‌ବୈ ପଶ୍ୟନ୍ତି ସୂରୟଃ ॥୨
ତନ୍ନିଷ୍ଠସ୍ୱାନ୍ତସଙ୍କଳ୍ପା ନିତ୍ୟଂ ତଭାବ ଭାବିତାଃ ।
ପଶ୍ୟନ୍ତି ତତ୍ପରଂ ବ୍ରହ୍ମ ଯତ୍ତଲିଙ୍ଗମିତି ଶ୍ରୁତିଃ ॥୩

କୌଣସି ଚିହ୍ନ ନଥାଇ ଏକ ଏବଂ ଅବ୍ୟକ୍ତ ଲିଙ୍ଗବାଲା ବ୍ରହ୍ମସ୍ୱରୂପ ନିଶ୍ଚିତ କରାଗଲା । ଏହା ସୃଷ୍ଟି ପୂର୍ବରୁ ଜ୍ୟୋତିଃସ୍ୱରୂପ ପରତତ୍ତ୍ୱ ପରମାକାଶରେ ଦେଦୀପ୍ୟମାନ ହୋଇଥାଏ । ଯାହାକୁ ଅବ୍ୟକ୍ତ କାରଣ ବ୍ରହ୍ମ କୁହାଯାଏ । ଏହି ଅକ୍ଷର ଏବଂ ପରମପଦ ନିର୍ଗୁଣ ସିଦ୍ଧିର ବିଜ୍ଞାନ ଅଟେ ଯାହାକୁ ବିଜ୍ଞାନୀ ଲୋକ କେବଳ ଦେଖିବାକୁ ସମର୍ଥ ହୋଇଥାଆନ୍ତି । ଶ୍ରୁତି ଯେଉଁ ରୂପରେ ଏହାକୁ ଲିଙ୍ଗ କହିଥାଏ, ତାକୁ ମୁମୁକ୍ଷୁ ଜ୍ଞାନୀ ଯଥାର୍ଥ ରୂପରେ ଦେଖିପାରିଥାଏ । ଯାହାଙ୍କ ଅନ୍ତଃକରଣରେ ସମସ୍ତ ସଙ୍କଳ୍ପ ନଷ୍ଟ ହୋଇଯାଇଥାଏ ଏବଂ ଯାହାର କଦାକାର ବୃତ୍ତିର ଭାବନା ସର୍ବଦା ଏକ ହୋଇ ରହିଥାଏ ।

ଅନ୍ୟଥା ନହି ମାଂ ଦ୍ରଷ୍ଟୁଂ ଶକ୍ୟଂ ବୈ ମୁନିପୁଙ୍ଗବାଃ ।
ନହି ତଦ୍ୱିଦ୍ୟତେ ଜ୍ଞାନଂ ଯେନ ତଜ୍ଜ୍ଞାୟତେ ପରମ୍ ॥୪
ଏତତ୍ତତ୍ପରମଂ ଜ୍ଞାନଂ କେବଳଂ କବୟୋ ବିଦୁଃ ।
ଅଜ୍ଞାନମିରଜ୍ଞାନଂ ଯସ୍ମାନ୍ମାୟାମୟଂ ଜଗତ୍ ॥୫
ମଜ୍ଜ୍ଞାନଂ ନିର୍ମଳଂ ଶୁଦ୍ଧଂ ନିର୍ବିକଳ୍ପଂ ନିରଞ୍ଜନମ୍ ।
ମମାତ୍ମାସୌ ତଦେବେଦମିତି ପ୍ରାହୁର୍ବିପଶ୍ଚିତଃ ॥୬

ହେ ମୁନିଶ୍ରେଷ୍ଠ ! ଏହାଠାରୁ ଅତିରିକ୍ତ ମୋର ସ୍ୱରପକୁ କେହି ଦେଖିପାରିବେ ନାହିଁ । କୌଣସି ଏପରି ଜ୍ଞାନ ଯାହା ମୋର ପରଂବ୍ରହ୍ମ ସ୍ୱରୂପକୁ ଯଥାର୍ଥ ଭାବରେ ଜାଣିପାରିବ । ଏହି ପରମ ଉତ୍କୃଷ୍ଟ ଜ୍ଞାନକୁ କେବଳ ବିଦ୍ୱାନ୍ ଲୋକମାନେ ଜାଣିପାରିବେ । ଏହି ଜ୍ଞାନଠାରୁ ଭିନ୍ନ ଯେଉଁ ଜ୍ଞାନ ଅଛି ସେସବୁ କ୍ଷଣଭଙ୍ଗୁର ମାୟାମୟ ବୋଲି ବୁଝିବା ଉଚିତ୍ । ଯେଉଁ ଜ୍ଞାନ ନିର୍ମଳ, ଶୁଦ୍ଧ, ନିର୍ବିକଳ୍ପ ଏବଂ ନିର୍ବିକାର ସ୍ୱରୂପ ଅଟେ ତାହା ଆମର ସ୍ୱରୂପ ଅଟେ । ଏହାକୁ ବିଦ୍ୱାନ୍‌ମାନେ ପୂର୍ଣ୍ଣଜ୍ଞାନ କହିଥାଆନ୍ତି ।

**ଯେଽପ୍ୟନେକଂ ପ୍ରପଶ୍ୟନ୍ତି ତତ୍ପରଂ ପରମଂ ପଦମ୍ ।**
**ଆଶ୍ରିତାଃ ପରମାଂ ନିଷ୍ଠାଂ ବୁଦ୍ଧ୍ୱୈକ୍ୟଂ ତତ୍ତ୍ୱମବ୍ୟୟମ୍ ।।୭**
**ପୁନଃ ପରମଂ ତତ୍ତ୍ୱମେକଂ ବାନେକମୀଶ୍ୱରମ୍ ।**
**ଭକ୍ତ୍ୟା ମାଂ ସମ୍ପ୍ରପଶ୍ୟନ୍ତି ବିଜ୍ଞେୟାସ୍ତେ ତଦାତ୍ମକାଃ ।।୮**
**ସାକ୍ଷାଦ୍ଦେବଂ ପ୍ରପଶ୍ୟନ୍ତି ସ୍ୱାତ୍ମାନଂ ପରମେଶ୍ୱରମ୍ ।**
**ନିତ୍ୟାନନ୍ଦଂ ନିର୍ବିକଳ୍ପଂ ସତ୍ୟରୂପମିତି ସ୍ଥିତିଃ ।।୯**

ଯେଉଁ ବିଦ୍ୱାନ୍ ପରମନିଷ୍ଠାକୁ ଜାଣିକରି ଅନେକାତ୍ମକ ରୂପରୁ ପରମପଦକୁ ଦେଖନ୍ତି ସେ ମଧ୍ୟ ଐକାନ୍ତିକ ଅବ୍ୟୟ ତତ୍ତ୍ୱର ଆଶ୍ରିତ ଅଟେ । ଯେଉଁ ନିଶ୍ଚଳ ଭକ୍ତିରୁ ପରମତତ୍ତ୍ୱର ଏକ ବା ଅନେକ ରୂପରେ ଦେଖନ୍ତି ସେ ମଧ୍ୟ ତଦାତ୍ମକ ହୋଇଯାଇ ପାରନ୍ତି । କାରଣ ସେ ମଧ୍ୟ ସାକ୍ଷାତ୍ ସ୍ୱାତ୍ମରୂପ ମୋର ପରମେଶ୍ୱର ଦେବଙ୍କୁ ଦେଖିପାରନ୍ତି । ଏହି ତତ୍ତ୍ୱର ସ୍ୱରୂପ ନିତ୍ୟ, ଆନନ୍ଦ, ନିର୍ବିକଳ୍ପ ଏବଂ ସତ୍ୟ ସ୍ୱରୂପ ଅଟେ । ଅତଏବ ଦୁଇଜଣଙ୍କର ଏକପ୍ରକାର ଗତି ହୋଇଥାଏ ।

**ଭଜନ୍ତେ ପରମାନନ୍ଦଂ ସର୍ବଗଂ ଜଗଦାତ୍ମକମ୍ ।**
**ସ୍ୱାତ୍ମନ୍ୟବସ୍ଥିତାଃ ଶାନ୍ତାଃ ପରେବ୍ୟକ୍ତା ପରସ୍ୟ ତୁ ।।୧୦**
**ଏଷା ବିମୁକ୍ତିଃ ପରମା ମମ ସାୟୁଜ୍ୟମୁତ୍ତମମ୍ ।**
**ନିର୍ବାଣଂ ବ୍ରହ୍ମଣା ଚୈକ୍ୟଂ କୈବଲ୍ୟଂ କବୟୋ ବିଦୁଃ ।।୧୧**
**ତସ୍ମାଦନାଦିମଧ୍ୟାନ୍ତଂ ବସ୍ତ୍ୱେକଂ ପରମଂ ଶିବମ୍ ।**
**ସ ଈଶ୍ୱରୋ ମହାଦେବସ୍ତଂ ବିଜ୍ଞାୟ ପ୍ରମୁଚ୍ୟତେ ।।୧୨**

ଅନ୍ୟ ଲୋକମାନେ ନିଜ ଆତ୍ମାରେ ରମଣ କରିବାବାଲା ଶାନ୍ତବୃତ୍ତିବାଲା ପରମ ଅବ୍ୟକ୍ତ ସ୍ୱରୂପ ଆତ୍ମା ଦେବଙ୍କୁ ପରମାନନ୍ଦ ସର୍ବତ୍ରଗାମୀ ତଥା ଜଗଦାତ୍ମକ ରୂପରେ ସର୍ବଦା ଭଜନ୍ତି । ଏହା ହିଁ ପରମ ବିମୁକ୍ତି ଅଟେ । ତାହାଙ୍କୁ ମୋର

ସାଙ୍ଗରେ ସାଯୁଜ୍ୟଭାବକୁ ପ୍ରାପ୍ତି ବା ନିର୍ବାଣ ଅଥବା ବ୍ରହ୍ମଙ୍କ ସାଙ୍ଗରେ ଏକତାରୂପ କୈବଲ୍ୟ ଆଦି ସଂଜ୍ଞାରେ ମୁକ୍ତିକୁ ବିଦ୍ୱାନ୍‌ଲୋକମାନେ ବ୍ୟବହାର କରନ୍ତି । କାରଣ ମୁକ୍ତିର କାରଣ ଆଦି, ମଧ୍ୟ, ଅନ୍ତ, ଶୂନ୍ୟବସ୍ତୁ ସ୍ୱରୂପ ଏକ ପରମ ଶିବ ହିଁ ଅଟେ । ସେହି ଈଶ୍ୱର ମହାଦେବ ଆଦି ସଂଜ୍ଞାରେ ଜାଣିବାକୁ ହୁଏ । ତାଙ୍କୁ ଜାଣିକରି ମନୁଷ୍ୟ ମୁକ୍ତ ହୋଇ ଯାଇଥାଏ । ଶ୍ରୁତି ମଧ୍ୟ ଏହି ଅର୍ଥକୁ ପୁଷ୍ଟ କରିଥାଏ । ‘‘ତମେବ ବିଦିତ୍ୱାତିମୃତ୍ୟୁମେତି ନାନ୍ୟଃ ପନ୍ଥା ବେଦିତେଽୟନାୟ’’ (ଶ୍ୱେ.ଉ.) ଅର୍ଥାତ୍ ଏହି ମହେଶ୍ୱରଙ୍କୁ ଜାଣିକରି ମୁମୁକ୍ଷୁ ମୃତ୍ୟୁଶୂନ୍ୟ ସ୍ଥାନକୁ ପ୍ରାପ୍ତ ହୋଇଥାଏ । ଏହାଛଡ଼ା ଅନ୍ୟ କୌଣସି ମୁକ୍ତିର ମାର୍ଗ ନାହିଁ ।

**ନ ତତ୍ର ସୂର୍ଯ୍ୟଃ ପ୍ରତିଭାତୀହ ଚନ୍ଦ୍ରୋ ନକ୍ଷତ୍ରାଣାଂ ଗଣୋ ନୋତ ବିଦ୍ୟୁତଃ ।**
**ତଭାସିତଂ ହ୍ୟଖିଳଂ ଭାତି ବିଶ୍ୱମତୀବ ଭାସମମଳଂ ଯଦ୍ୱିଭାତି ॥୧୩**
**ବିଶ୍ୱୋଦିତନ୍ନିଷ୍କଳଂ ନିର୍ବିକଳ୍ପଂ ଶୁଦ୍ଧଂ ବୃହତ୍ପରମଂ ଯଦ୍ୱିଭାତି ।**
**ଅତ୍ରାନ୍ତରେ ବ୍ରହ୍ମ ବିଦୋଽଥ ନିତ୍ୟଂ ପଶ୍ୟନ୍ତି ତତ୍ତ୍ୱମଚଳଂ ଯସ୍ସ ଈଶଃ ॥୧୪**

ସେଠାରେ ସୂର୍ଯ୍ୟ, ଚନ୍ଦ୍ରମା, ନକ୍ଷତ୍ର ନୁହେଁ କି ବିଦ୍ୟୁତ୍ ନୁହେଁ, ପ୍ରକାଶ କରିବାରେ ସମର୍ଥ ନୁହଁନ୍ତି । ପ୍ରକୃତରେ ବ୍ରହ୍ମଙ୍କ ପ୍ରକାଶ ମଳଶୂନ୍ୟ ଅଖିଳ ବିଶ୍ୱ ଉଭାସିତ ହୋଇଯାଏ । ଏହି ତତ୍ତ୍ୱ ଯାହାଦ୍ୱାରା ନିଶ୍ୱରେ ଉଦିତ ହୁଏ ନିଷ୍କଳ, ନିର୍ବିକଳ୍ପ, ଶୁଦ୍ଧ ଏବଂ ବୃହତ୍ ରୂପ ପ୍ରକାଶିତ ହୋଇଥାଏ ଏବଂ ବିଶ୍ୱରଚନା ତଥା ଚୈତନ୍ୟ ତତ୍ତ୍ୱର ମିଶ୍ରଣରେ ଅଚଳ ସ୍ୱରୂପଯୁକ୍ତ ଯେଉଁ ତତ୍ତ୍ୱ ବ୍ରହ୍ମବେତ୍ତାଗଣ ଦେଖିଥାଆନ୍ତି ସେହି ଈଶ୍ୱର ଅଟନ୍ତି ।

**ନିତ୍ୟାନନ୍ଦମମୃତଂ ସତ୍ୟରୂପଂ ଶୁଦ୍ଧଂ ବଦନ୍ତି ପୁରୁଷଂ ସର୍ବବେଦାଃ ।**
**ପ୍ରାଣାନିତି ପ୍ରାଣବିନେଶିତାରଂ ଧ୍ୟାୟନ୍ତି ବେଦୈରିତି ନିଷ୍ଚିତାର୍ଥାଃ ॥୧୫**
**ନ ଭୂମିରାପୋ ନ ମନୋ ନ ବହ୍ନିଃ ପ୍ରାଣୋଽନିଲୋ ଗଗନଂ ନୋତ ବୁଦ୍ଧିଃ ।**
**ନ ଚେତନୋଽନ୍ୟତ୍ପରମାକାଶମଧ୍ୟେ ବିଭାତି ଦେବଃ ଶିବ ଏକ କେବଳଃ ॥୧୬**
**ଇତ୍ୟେତଦୁକ୍ତଂ ପରମଂ ରହସ୍ୟଂ ଜ୍ଞାନଂ ଚେଦଂ ସର୍ବବେଦେଷୁ ଗୀତମ୍ ।**
**ଜାନାତି ଯୋଗୀ ବିଜନେଽଥ ଦେଶେ ଯୁଞ୍ଜୀତ ଯୋଗଂ ପ୍ରୟତୋ ହ୍ୟଜସ୍ରମ୍ ॥୧୭**

ନିତ୍ୟ ଆନନ୍ଦ, ଅମୃତ, ସତ୍ୟରୂପ ଏବଂ ଶୁଦ୍ଧରୂପରୁ ସମସ୍ତ ବେଦ ପରମାତ୍ମାଙ୍କ ସ୍ୱରୂପକୁ ପ୍ରତିପାଦନ କରିଥାଏ । କେହି କେହି ପ୍ରାଣରୂପରେ ଈଶ୍ୱରଙ୍କୁ ଧ୍ୟାନ କରନ୍ତି । ଏହିପରି ଏହା ନିଶ୍ଚିତ ଅର୍ଥ ଅଟେ ଯେ ଏଠାରେ ପୃଥିବୀ ନୁହେଁ, ଜଳ, ଅଗ୍ନି, ବାୟୁ, ଆକାଶ ମନ ନୁହେଁ କି ବୁଦ୍ଧି ନୁହେଁ ଅଥବା ଚେତନ ପ୍ରାଣ

ଅଟେ । ଏହି ପରମାକାଶରେ ତ କେବଳ ଏକ ଶିବତତ୍ତ୍ୱ ଯାହା ଦ୍ୟୋତନାତ୍ମକ ସ୍ୱରୂପବାଲା ପ୍ରକାଶିତ ହେଉଥାଏ । ହେ ଋଷିଗଣ ! ଏହି ପରମ ରହସ୍ୟମୟ ଜ୍ଞାନ ଯାହା ସମସ୍ତ ବେଦରେ ଏକ ବୋଲି କୁହାଯାଇଛି ମୁଁ ଆପଣ ସମସ୍ତଙ୍କୁ ଶୁଣାଇଲି, ଏହାକୁ ଏକାନ୍ତ ଦେଶରେ ଆତ୍ମା ସହିତ ଏକୀଭାବକୁ ପ୍ରାପ୍ତ ହେବା ପାଇଁ ପ୍ରୟତ୍ନଶୀଳ ଯୋଗୀ କେବଳ ଜାଣିପାରିଥାଏ ।

ଇତି ଶ୍ରୀକୂର୍ମପୁରାଣେ ଉତ୍ତରାର୍ଦ୍ଧେ ଈଶ୍ୱରଗୀତାସୁ ଉପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଋଷିବ୍ୟାସସଂବାଦେ ଦଶମୋଽଧ୍ୟାୟଃ ।

---*---

# ଏକାଦଶ ଅଧ୍ୟାୟ

## ପାଶୁପତାଧ୍ୟାୟ ଓ ସମନ୍ୱୟାଧ୍ୟାୟ

*(ଏହି ଅଧ୍ୟାୟରେ ପାଶୁପତ ଯୋଗର ବର୍ଣ୍ଣନା କରାଯାଇଛି । ପାତଞ୍ଜଳ ଯୋଗଦର୍ଶନ ସଦୃଶ ଏହି ଅଧ୍ୟାୟରେ ବର୍ଣ୍ଣିତ ହୋଇଛି । ତାହାପରେ ଭକ୍ତିମିଶ୍ରିତ କର୍ମଯୋଗ ଶିବଲିଙ୍ଗର ପୂଜନ କାଶୀବାସର ମହିମା ବର୍ଣ୍ଣନା କରାଯାଇଛି । ତାଛଡ଼ା ଶିବ ଓ ବିଷ୍ଣୁଙ୍କର ଏକରୂପତା ମଧ୍ୟ ବର୍ଣ୍ଣିତ ଅଛି । ତେଣୁ ଏହି ଅଧ୍ୟାୟକୁ ପାଶୁପତଯୋଗାଧ୍ୟାୟ ବା ସମନ୍ୱୟାଧ୍ୟାୟ ନାମକରଣ କରାଯାଇଛି ।)*

**ଅତଃ ପରଂ ପ୍ରବକ୍ଷ୍ୟାମି ଯୋଗଂ ପରମଦୁର୍ଲଭମ୍ ।**
**ଯେନାତ୍ମାନଂ ପ୍ରପଶ୍ୟନ୍ତି ଭାନୁମନ୍ତମିବେଶ୍ୱରମ୍ ।।୧**
**ଯୋଗାଗ୍ନିର୍ଦହ୍ୟତେ କ୍ଷିପ୍ରମଶେଷଂ ପାପପଞ୍ଜରମ୍ ।**
**ପ୍ରସନ୍ନଂ ଜାୟତେ ଜ୍ଞାନଂ ସାକ୍ଷାନ୍ନିର୍ବାଣଂ ସିଦ୍ଧିଦମ୍ ।।୨**
**ଯୋଗାତ୍ସଞ୍ଜାୟତେ ଜ୍ଞାନଂ ଜ୍ଞାନାଦ୍ୟୋଗଃ ପ୍ରବର୍ତ୍ତତେ ।**
**ଯୋଗଜ୍ଞାନାଭିଯୁକ୍ତସ୍ୟ ପ୍ରସୀଦତି ମହେଶ୍ୱରଃ ।।୩**
**ଏକ କାଳଂ ଦ୍ୱିକାଳଂ ବା ତ୍ରିକାଳଂ ନିତ୍ୟମେବ ଚ ।**
**ଯେ ଯୁଞ୍ଜନ୍ତି ମହାଯୋଗଂ ତେ ବିଜ୍ଞେୟା ମହେଶ୍ୱରାଃ ।।୪**

ଏହାପରେ ପରମ ଦୁର୍ଲଭ ଯୋଗ ମାର୍ଗର ନିରୂପଣ କରୁଅଛି । ଯାହା ସୂର୍ଯ୍ୟଙ୍କ ପରିପ୍ରକାଶ ଈଶ୍ୱରଙ୍କୁ ଯୋଗୀଗଣ ଦେଖନ୍ତି । ଯୋଗରୁ ଉତ୍ପନ୍ନ ହେଉଥିବା ଅଗ୍ନି ସମସ୍ତ ପାପପୁଞ୍ଜକୁ ନଷ୍ଟ କରିଦେଇଥାଏ ଓ ମୋକ୍ଷ ଏବଂ ସିଦ୍ଧିମାନଙ୍କୁ ପ୍ରଦାନ କରିପାରୁଥିବା ପ୍ରସନ୍ନ ଜ୍ଞାନ ଉତ୍ପନ୍ନ ହୋଇଥାଏ । ଯୋଗରୁ ହିଁ ଜ୍ଞାନ ହୋଇଥାଏ, ଜ୍ଞାନରୁ ହିଁ ଯୋଗ ପ୍ରବୃତ୍ତି ଉତ୍ପନ୍ନ ହୁଏ । ଯିଏ ଯୋଗ ଓ ଜ୍ଞାନ ଦୁଇଟିରେ ଯୁକ୍ତ ହୋଇଯାଏ, ତା ଉପରେ ଭଗବାନ୍ ମହେଶ୍ୱର ପ୍ରସନ୍ନ ହୁଅନ୍ତି । ଏକକାଳ, ଦ୍ୱିକାଳ, ତିନିକାଳ ବା ନିତ୍ୟ ହିଁ ଯିଏ ମହାଯୋଗରେ ଯୁକ୍ତ ହୁଏ ସେ ସାକ୍ଷାତ୍ ପରମେଶ୍ୱର ବୋଲି ଜାଣିବାକୁ ହେବ ।

**ଯୋଗସ୍ତୁ ଦ୍ୱିବିଧୋ ଜ୍ଞେୟୋ ହ୍ୟଭାବଃ ପ୍ରଥମୋ ମତଃ ।**
**ଅୟମେବ ମହାଯୋଗଃ ସର୍ବଯୋଗୋତ୍ତମୋତ୍ତମଃ ।।୫**

**ଶୂନ୍ୟଂ ସର୍ବନିରାଭାସଂ ସ୍ୱରୂପଂ ଯତ୍ର ଚିନ୍ତ୍ୟତେ ।**
**ଅଭାବଯୋଗଃ ସ ପ୍ରୋକ୍ତୋ ଯେନାତ୍ମାନଂ ପ୍ରପଶ୍ୟନ୍ତି ॥୬**
**ଯତ୍ର ପଶ୍ୟତି ଚାତ୍ମାନଂ ନିତ୍ୟାନନ୍ଦଂ ନିରଞ୍ଜନମ୍ ।**
**ମୟୈକ୍ୟଂ ସ ମୟା ଯୋଗୋ ଭାଷିତଃ ପରମଃ ସ୍ୱୟମ୍ ॥୭**
**ଯେ ଚାନ୍ୟେ ଯୋଗିନାଂ ଯୋଗାଃ ଶ୍ରୂୟନ୍ତେ ଗ୍ରନ୍ଥବିସ୍ତରେ ।**
**ସର୍ବେ ତେ ବ୍ରହ୍ମଯୋଗସ୍ୟ କଳାଂ ନାର୍ହନ୍ତି ଷୋଡଶୀମ୍ ॥୮**

ଯୋଗ ଦୁଇପ୍ରକାର ଅଟେ । ପ୍ରଥମେ ଅଭାବଯୋଗ ଓ ଦ୍ୱିତୀୟରେ ସମସ୍ତ ଯୋଗରୁ ଉତ୍ତମ ମହାଯୋଗ । ଯେଉଁ କାଳରେ ଶୂନ୍ୟ ଆକାର ହୀନ ନିରାଭାସ ସ୍ୱରୂପର ଚିନ୍ତନ କରାଯାଏ ତାକୁ ଅଭାବଯୋଗ କୁହାଯାଏ । ଯେଉଁ ଯୋଗରେ ଆତ୍ମାର ସାକ୍ଷାତ୍କାର ହୁଏ ଓ ଯେଉଁ ଅବସ୍ଥାରେ ନିତ୍ୟ ଆନନ୍ଦସ୍ୱରୂପ ନିର୍ବିକାର ଆତ୍ମାକୁ ମୋ ସାଥୀରେ ଐକ୍ୟ ରୂପରେ ଦେଖାଯାଏ । ଏହାକୁ ମୁଁ ନିଜେ ପରମଯୋଗ ବୋଲି କହିଛି । ଏହାକୁ ଛାଡ଼ି ଅନ୍ୟ ଯେତେ ଯୋଗ ଗ୍ରନ୍ଥାନ୍ତରେ କୁହାଯାଇଛି ସେସବୁ ଏହି ବ୍ରହ୍ମଯୋଗର ଷୋହଳ କଳାକୁ ମଧ୍ୟ ପ୍ରାପ୍ତ କରିପାରେ ନାହିଁ ।

**ଯତ୍ର ସାକ୍ଷାତ୍ ପ୍ରପଶ୍ୟନ୍ତି ବିମୁକ୍ତା ବିଶ୍ୱମୀଶ୍ୱରମ୍ ।**
**ସର୍ବେଷାମେବ ଯୋଗାନାଂ ସଂଯୋଗଃ ପରମୋ ମତଃ ॥୯**
**ସହସ୍ରଶୋଽଥ ବହୁଶୋ ଯେ ଚେଶ୍ୱରବହିଷ୍କୃତାଃ ।**
**ନ ତେ ପଶ୍ୟନ୍ତି ମାମେକଂ ଯୋଗିନୋ ଯତମାନସାଃ ॥୧୦**
**ପ୍ରାଣାୟାମସ୍ତଥା ଧ୍ୟାନଂ ପ୍ରତ୍ୟାହାରୋଽଥ ଧାରଣା ।**
**ସମାଧିସ୍ତୁମୁନିଶ୍ରେଷ୍ଠା ଯମଷ୍ଟ ନିୟମାସନେ ॥୧୧**
**ମୟ୍ୟେକ ଚିତ୍ତତା ଯୋଗଃ ପ୍ରତ୍ୟନ୍ତରନିୟୋଗତଃ ।**
**ତତ୍ସାଧନାନି ଚାନ୍ୟାନି ଯୁଷ୍ମାକଂ କଥିତାନି ତୁ ॥୧୨**

ଯେଉଁ ସମୟରେ ବିମୁକ୍ତ ଅବସ୍ଥାପନ୍ନ ଯୋଗୀ ଏହି ବିଶ୍ୱକୁ ଈଶ୍ୱରଙ୍କଠାରୁ ଅଭିନ୍ନ ରୂପରେ ଦେଖେ ସେହି ଯୋଗ ସମସ୍ତ ଯୋଗଠାରୁ ଶ୍ରେଷ୍ଠ ବୋଲି ଗ୍ରହଣ କରାଯାଇଛି । ସହସ୍ର ଏବଂ ବହୁତ ଜୀବ ଯେଉଁ ଈଶ୍ୱରଙ୍କଠାରୁ ବହିଷ୍କୃତ ଅଟନ୍ତି ଯତ୍ନଶୀଳ ହୋଇ ମଧ୍ୟ ମୋର ଏକରୂପତା ଦେଖିବାରେ ସମର୍ଥ ହୋଇପାରନ୍ତି ନାହିଁ । ପ୍ରାଣାୟାମ, ଧ୍ୟାନ, ପ୍ରତ୍ୟାହାର, ଧାରଣା, ସମାଧି, ଯମ, ନିୟମ ଏବଂ ଆସନ ଏହି ଆଠଟି ଅଙ୍ଗ ମଧ୍ୟରୁ ବାହ୍ୟ ବୃତ୍ତିରୁ ମନକୁ ଫେରେଇ ମୋ ମଧ୍ୟରେ ଲଗାଇବା

ଯୋଗ କୁହାଯାଏ । ହେ ମୁନିଶ୍ରେଷ୍ଠ ! ଏହାକୁ ଧ୍ୟାନଯୋଗ କୁହାଯାଏ । ଏହାଦ୍ୱାରା ଅନ୍ୟାନ୍ୟ ସାଧନର ବର୍ଣ୍ଣନା ଆପଣମାନଙ୍କୁ ମୁଁ ବିସ୍ତାର ପୂର୍ବକ କହୁଅଛି । ଏହାର ନାମ ନିର୍ଦ୍ଦେଶ ସଂକ୍ଷେପରେ କୁହାଗଲା । ''ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା, ଧ୍ୟାନ, ସମାଧୟୋ ଅଷ୍ଟାବଙ୍ଗାନି'' (ଯୋ.ଦ. ୨/୨୯) ।

**ଅହିଂସା ସତ୍ୟମସ୍ତେୟଂ ବ୍ରହ୍ମଚର୍ଯ୍ୟା ପରିଗ୍ରହୌ ।**
**ଯମାଃ ସଙ୍କ୍ଷେପତଃ ପ୍ରୋକ୍ତାଶ୍ଚିତ୍ତଶୁଦ୍ଧିପ୍ରଦା ନୃଣାମ୍ ॥୧୩**
**କର୍ମଣା ମନସା ବାଚା ସର୍ବଭୂତେଷୁ ସର୍ବଦା ।**
**ଅକ୍ଲେଶଜନନଂ ପ୍ରୋକ୍ତା ତ୍ୱହିଂସା ପରମର୍ଷିଭିଃ ॥୧୪**
**ଅହିଂସାୟାଃ ପରୋ ଧର୍ମୋ ନାସ୍ତ୍ୟହିଂସା ପରଂ ସୁଖମ୍ ।**
**ବିଧିନା ଯା ଭବେଦ୍ଧିଂସା ତ୍ୱହିଂସୈବ ପ୍ରକୀର୍ତ୍ତିତା ॥୧୫**
**ସତ୍ୟେନ ସର୍ବମାପ୍ନୋତି ସତ୍ୟେ ସର୍ବଂ ପ୍ରତିଷ୍ଠିତମ୍ ।**
**ଯଥାର୍ଥକଥନାଚାରଃ ସତ୍ୟଂ ପ୍ରୋକ୍ତଂ ଦ୍ୱିଜାତିଭିଃ ॥୧୬**

ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ ଏବଂ ଅପରିଗ୍ରହ ସଂକ୍ଷେପରେ ପାଞ୍ଚକୁ ଯମ କୁହାଯାଏ । ଏହି ପାଞ୍ଚ ଯମ ସାଧକର ଚିତ୍ତକୁ ଶୁଦ୍ଧ କରିଥାଏ । ମନ, କର୍ମ ଓ ବାଣୀଦ୍ୱାରା କୌଣସି ଜୀବଙ୍କୁ କ୍ଲେଶ ନ ଦେବାକୁ ଋଷିମାନେ ଅହିଂସା କହନ୍ତି । ଅହିଂସା ସଦୃଶ ଦ୍ୱିତୀୟ ଧର୍ମ ନାହିଁ । ଅହିଂସା ପରି କୌଣସି ଦ୍ୱିତୀୟ ସୁଖ ମଧ୍ୟ ନାହିଁ । ବୈଦିକ ସ୍ମୃତି ଗ୍ରନ୍ଥରେ ଯାହା ବିଧି ରୂପରେ ହିଂସା କୁହାଯାଇଛି ତାକୁ ଅହିଂସା ବୋଲି ବୁଝିବା ଉଚିତ୍ । ସତ୍ୟଦ୍ୱାରା ସମସ୍ତ ବସ୍ତୁ ପ୍ରାପ୍ତ ହୋଇଥାଏ । ସତ୍ୟରେ ହିଁ ସମସ୍ତ ପ୍ରତିଷ୍ଠିତ ହୋଇଥାନ୍ତି । ଯଥାର୍ଥ କଥନାଚାରକୁ ବ୍ରାହ୍ମଣମାନେ ସତ୍ୟ ବୋଲି କହିଥାନ୍ତି । ଏହି ଭାବର ଯୋଗଦର୍ଶନ ମଧ୍ୟ ପ୍ରମାଣିତ କରେ- 'ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ, ଅପରିଗ୍ରହା, ଯମାଃ' (ଯୋ.ଦ. ୨/୭) ଅର୍ଥ ସ୍ପଷ୍ଟ ଅଟେ ।

**ପରଦ୍ରବ୍ୟାପହରଣଂ ଶୌର୍ଯ୍ୟାଦଥ ବଳେନ ବା ।**
**ସ୍ତେୟଂ ତସ୍ୟାନାଚରଣାଦସ୍ତେୟଂ ଧର୍ମସାଧନମ୍ ॥୧୭**
**କର୍ମଣା ମନସା ବାଚା ସର୍ବାବସ୍ଥାସୁ ସର୍ବଦା ।**
**ସର୍ବତ୍ର ମୈଥୁନତ୍ୟାଗଂ ବ୍ରହ୍ମଚର୍ଯ୍ୟଂ ପ୍ରଚକ୍ଷତେ ॥୧୮**
**ଦ୍ରବ୍ୟାଣାମପ୍ୟନାଦାନମାପଦ୍ୟପି ତଥେଚ୍ଛୟା ।**
**ଅପରିଗ୍ରହମିତ୍ୟାହୁସ୍ତଂ ପ୍ରଯତ୍ନେନ ପାଳୟେତ୍ ॥୧୯**

ଅନ୍ୟର ଦ୍ରବ୍ୟକୁ ଚୋରି ଅଥବା ବଳପୂର୍ବକ ହରଣ କରିବା 'ସ୍ତେୟ' କୁହାଯାଏ । ଏହି ପ୍ରବୃତ୍ତି ତ୍ୟାଗ କରିବା 'ଅସ୍ତେୟ' କୁହାଯାଏ । ଏହା ଧର୍ମର ସାଧନ ଅଟେ । ମନ, ବାଣୀ ଓ କର୍ମରେ ସର୍ବଦା ସର୍ବଦଶାରେ ମୈଥୁନ ତ୍ୟାଗକୁ 'ବ୍ରହ୍ମଚର୍ଯ୍ୟ' କୁହାଯାଏ । ଆପତ୍ତିରେ ମଧ ଦ୍ରବ୍ୟସଂଗ୍ରହ ନ କରିବା ପ୍ରବୃତ୍ତିକୁ 'ଅପରିଗ୍ରହ' କୁହାଯାଏ । ଯୋଗମାର୍ଗ ଅନୁସାରେ ଏହିସବୁ ନିୟମକୁ ଯତ୍ନର ସହ ପାଳନ କରିବା ଉଚିତ୍ ।

**ତପଃ ସ୍ୱାଧ୍ୟାୟ ସନ୍ତୋଷୌ ଶୌଚମୀଶ୍ୱରପୂଜନମ୍ ।**
**ସମାସାନ୍ନିୟମାଃ ପ୍ରୋକ୍ତା ଯୋଗସିଦ୍ଧିପ୍ରଦାୟିନଃ ।।୨୦**
**ଉପବାସପରାକାଦିକୃଚ୍ଛ୍ରଂ ଚାନ୍ଦ୍ରାୟଣାଦିଭିଃ ।**
**ଶରୀରଶୋଷଣଂ ପ୍ରାହୁସ୍ତାପସାସ୍ତପ ଉତ୍ତମମ୍ ।।୨୧**
**ଦେବାନ୍ତ-ଶତରୁଦ୍ରୀୟ-ପ୍ରଣାବାଦିଜପଂ ବୁଧାଃ ।**
**ସାତ୍ତ୍ୱଂ ଶୁଦ୍ଧକରଂ ପୁଂସାଂ ସ୍ୱାଧ୍ୟାୟଂ ପରିଚକ୍ଷତେ ।।୨୨**

ତପଃ, ସ୍ୱାଧ୍ୟାୟ, ସନ୍ତୋଷ, ଶୌଚ ଏବଂ ଈଶ୍ୱରଙ୍କ ପୂଜା ସଂକ୍ଷେପରେ ପାଞ୍ଚ ନିୟମ କହୁଛି । ଏହି ନିୟମ ଆଚରଣରେ ଯୋଗସିଦ୍ଧି ପ୍ରାପ୍ତ ହୋଇଥାଏ । ଉପବାସପରକାଦି ଏବଂ କୃଚ୍ଛ୍ରଚାନ୍ଦ୍ରାୟଣାଦିରୁ ଶରୀରର ସୁଖାଦିକୁ ତପସ୍ୱୀ ଲୋକ ଉତ୍ତମ ତପ କହନ୍ତି । ବେଦାନ୍ତ, ଶତରୁଦ୍ରୀୟ, ପ୍ରଣବ ଆଦି ଜପଦ୍ୱାରା ମନୁଷ୍ୟର ଅନ୍ତଃକରଣ ପବିତ୍ର ହୋଇଥାଏ ଓ ଏହାକୁ ସ୍ୱାଧ୍ୟୟ କୁହାଯାଏ ।

**ସ୍ୱାଧ୍ୟାୟସ୍ୟ ତ୍ରୟୋ ଭେଦାଃ ବାଚିକୋ ପାଂଶୁ ମନସାଃ ।**
**ଉତ୍ତରୋତ୍ତରବୈଶିଷ୍ଟ୍ୟଂ ପ୍ରାହୁର୍ବେଦାର୍ଥବେଦିନଃ ।।୨୩**
**ଯଃ ଶବ୍ଦବୋଧଜନନଃ ପରେଷାଂ ଶୃଣ୍ୱତାଂ ସ୍ଫୁଟମ୍ ।**
**ସ୍ୱାଧ୍ୟାୟୋ ବାଚିକଃ ପ୍ରୋକ୍ତ ଉପାଂଶୋରଥଲକ୍ଷଣମ୍ ।।୨୪**
**ଓଷ୍ଠୟୋଃ ସ୍ପନ୍ଦମାତ୍ରେଣ ପରସ୍ୟା ଶବ୍ଦବୋଧକମ୍ ।**
**ଉପାଂଶୁରେବ ନିର୍ଦ୍ଦିଷ୍ଟଃ ସାଧ୍ୱସୌ ବାଚିକାଞ୍ଚପାତ୍ ।।୨୫**
**ଯତ୍ପଦକ୍ଷରସଙ୍ଗତ୍ୟା ପରିସ୍ପନ୍ଦନବର୍ଜିତମ୍ ।**
**ଚିନ୍ତନଂ ସର୍ବଶବ୍ଦାନାଂ ମାନସଂ ତଜ୍ଜପଂ ବିଦୁଃ ।।୨୬**

ସ୍ୱାଧ୍ୟାୟର ଲକ୍ଷଣ ମହର୍ଷି ବ୍ୟାସ ଲେଖିଛନ୍ତି ଯେ 'ପ୍ରଣବଃ ପବିତ୍ରାଣାଂ ଜପଃ' ଅର୍ଥାତ୍ ପୂର୍ବୋକ୍ତ ଶ୍ଳୋକରେ କୁହାଯାଇଥିବା ବେଦାନ୍ତ ଶତରୁଦ୍ରୀୟ ଆଦି ସ୍ୱାଧ୍ୟାୟ ପଦରେ ଗୃହୀତ ଅଟେ । ପୁଣି ସ୍ୱାଧ୍ୟାୟ ତିନି ପ୍ରକାର ଯଥା- ବାଚିକ,

ଉପାଂଶୁ ଓ ମାନସ । ଏହା ଉତ୍ତରୋତ୍ତର ପରସ୍ପର ଶ୍ରେଷ୍ଠ ଅଟେ । ଅର୍ଥାତ୍ ବାଚିକରେ ଉପାଂଶୁ ଓ ଉପାଂଶୁରୁ ମାନସର ଶ୍ରେଷ୍ଠତା ବୈଦିକ ବିଦ୍ୱାନ୍ ମାନନ୍ତି । ଅନ୍ୟ ପୁରୁଷ ଜାପକ ପୁରୁଷର ଜପର ଶବ୍ଦକୁ ସ୍ପଷ୍ଟ ରୂପରେ ଶୁଣିବାକୁ ବାଚିକ ସ୍ୱାଧ୍ୟାୟ କୁହାଯାଏ । ଏହାପରେ ଉପାଂଶୁର ଲକ୍ଷଣ ହେଲା ଯେଉଁ ଜପରେ କେବଳ ଓଠର ସ୍ପନ୍ଦନ ମାତ୍ର ହୁଏ ଓ ଅନ୍ୟ କାହାକୁ ଶବ୍ଦ ଶୁଣାଯାଏ ନାହିଁ, ତାହା ଉପାଂଶୁ ଜପ ଅଟେ । ଏହା ବାଚକଠାରୁ ଅଧିକ ଫଳପ୍ରଦ ଅଟେ । ଯେଉଁ ସ୍ୱାଧ୍ୟାୟରେ ପଦାକ୍ଷରର ସଙ୍ଗତିରେ ସମସ୍ତ ଶବ୍ଦର ଚିନ୍ତନ ମାତ୍ର କରାଯାଏ ଏବଂ କରାଯାଇଥିବା ସ୍ପନ୍ଦନ ଯେଉଁଥିରେ କି ଚିହ୍ନମାତ୍ର ମଧ ହୋଇ ନଥାଏ ଏହାକୁ ମାନସଜପ କୁହାଯାଏ । ଏହି ତିନି ପ୍ରକାର ଜପରୁ ଯେଉଁ ସିଦ୍ଧି ଯୋଗୀକୁ ପ୍ରାପ୍ତ ହୋଇଥାଏ । ଏହାକୁ ମହର୍ଷି ପତଞ୍ଜଳି ଯୋଗଦର୍ଶନରେ ଲେଖିଛନ୍ତି- 'ସ୍ୱାଧ୍ୟାୟାଦିଷ୍ଟଦେବତା ସଂପ୍ରଯୋଗଃ' (ଯୋ.ଦ. ୨/୪୪) ଅର୍ଥାତ୍ ସ୍ୱାଧ୍ୟାୟରେ ଇଷ୍ଟଦେବତାର ସାକ୍ଷାତ୍କାର ହୋଇଥାଏ ।

**ଯଦୃଚ୍ଛାଲାଭତୋ ବିତ୍ତଂ ଅଳଂ ପୁଂସୋ ଭବେଦିତି ।**
**ପ୍ରାଶସ୍ତ୍ୟମୃଷୟଃ ପ୍ରାହୁଃ ସନ୍ତୋଷଂ ସୁଖଲକ୍ଷଣମ୍ ॥୨୭**
**ବାହ୍ୟମାଭ୍ୟନ୍ତରଂ ଶୌଚଂ ଦ୍ୱିଧା ପ୍ରୋକ୍ତଂ ଦ୍ୱିଜୋତ୍ତମ ।**
**ମୃଜ୍ଜଲାଭ୍ୟାଂ ସ୍ମୃତଂ ବାହ୍ୟଂ ମନଃଶୁଦ୍ଧିରଥାନ୍ତରମ୍ ॥୨୮**
**ସ୍ତୁତିସ୍ମରଣପୂଜାଭିର୍ବାଙ୍‌ମନଃ କାୟକର୍ମଭିଃ ।**
**ସୁନିଶ୍ଚଳା ଶିବେ ଭକ୍ତିରେତଦୀଶସ୍ୟ ପୂଜନମ୍ ॥୨୯**

ଦୈବ ଇଚ୍ଛାନୁସାରଂ ଯାହା କିଛି ଲାଭ ହୁଏ, ଏହାକୁ ଋଷିମାନେ ପରମସୁଖ ସ୍ୱରୂପରୂପ ସନ୍ତୋଷ ବୋଲି କହନ୍ତି । 'ସନ୍ତୋଷାଦନୁତ୍ତମସୁଖଲାଭଃ' (ଯୋ.ଦ. ୨/୪୨) ହେ ବ୍ରାହ୍ମଣଶ୍ରେଷ୍ଠ ମୁନିଗଣ ! ଶୌଚ ଦୁଇପ୍ରକାର ମାନିଛନ୍ତି । ଏକ ବାହ୍ୟ ଅପର ଆନ୍ତରିକ ମୃତ୍ତିକା ଜଳ ଆଦି ଦ୍ୱାରା ଯେଉଁ ଶୌଚ ହୁଏ ତାକୁ ବାହ୍ୟଶୌଚ କୁହାଯାଏ । ମନର ଶୁଦ୍ଧି ଅର୍ଥାତ୍ କାମ, କ୍ରୋଧ, ଈର୍ଷ୍ୟା, ଭୟ ଆଦିର ନିବୃତ୍ତିରୂପ ଆନ୍ତରିକ ଶୌଚ କୁହାଯାଏ । ମନ, ବାକ୍ୟ, କର୍ମଦ୍ୱାରା ସ୍ତୁତି ସ୍ମରଣ ପୂଜାଦ୍ୱାରା ମୋ ପାଖରେ ପରମାତ୍ମା ପାଖରେ ନିଶ୍ଚଳା ଭକ୍ତି ହେଲା ଈଶ୍ୱରପୂଜା କୁହାଯାଏ । ଏହିପରି ପାଞ୍ଚ ନିୟମର ନିରୂପଣ କରାଗଲା । ମହର୍ଷି ପତଞ୍ଜଳିଙ୍କ ମତରେ ମଧ ଏହି ପାଞ୍ଚ ନିୟମ ରହିଛି । 'ଶୌଚ, ସନ୍ତୋଷ ତପଃ ସ୍ୱାଧ୍ୟାୟେଶ୍ୱର ପ୍ରଣିଧାନାନି ନିୟମାଃ' (ଯୋ.ଦ. ୨/୩୨) ।

ଯମାଷ୍ଚ ନିୟମାଃ ପ୍ରୋକ୍ତା ପ୍ରାଣାୟାମଂ ନିବୋଧତଃ ।
ପ୍ରାଣଃ ସ୍ୱଦେହଜୋ ବାୟୁରାୟାମସ୍ତନ୍ନିରୋଧନମ୍ ।।୩୦
ଉତ୍ତମାଧମମଧ୍ୟତ୍ୱାତ୍ ତ୍ରିଧାୟଂ ପ୍ରତିପାଦିତଃ ।
ଯ ଏବ ଦ୍ୱିବିଧଃ ପ୍ରୋକ୍ତଃ ସଗର୍ଭୋଽଗର୍ଭ ଏବ ଚ ।।୩୧
ମାତ୍ରା ଦ୍ୱାଦଶକୋ ମନ୍ଦଷ୍ଚତୁର୍ବିଂଶତିମାତ୍ରକଃ ।
ମଧ୍ୟମଃ ପ୍ରାଣସଂରୋଧଃ ଷଟ୍ ତ୍ରିଂଶନ୍ମାତ୍ରିକୋତ୍ତମଃ ।।୩୨

ହେ ମୁନିଗଣ ! ସଂକ୍ଷେପରେ ଯମନିୟମର ସ୍ୱରୂପକୁ ଆପଣ ସମସ୍ତଙ୍କୁ କହିଲି । ଏଥର ପ୍ରାଣାୟାମର ସ୍ୱରୂପକୁ କହୁଛି । ଆପଣମାନେ ସାବଧାନରେ ଶୁଣନ୍ତୁ । ଶରୀରାନ୍ତ ସଞ୍ଚାରୀ ବାୟୁର ନାମ ପ୍ରାଣ ଅଟେ । ଏହା ନିରୋଧକୁ ପ୍ରାଣାୟାମ କୁହାଯାଏ । ଏହାର ଉତ୍ତମ, ମଧ୍ୟମ ଓ ଅଧମ ଭେଦରେ ତିନି ପ୍ରକାର ଅଟେ । ପୁଣି ଏହା ଦୁଇପ୍ରକାରରେ ବିଭକ୍ତ ହୋଇ ସଗର୍ଭ ଓ ଅଗର୍ଭ ସଂଜ୍ଞାରୂପରେ ବ୍ୟବହୃତ ହୋଇଥାଏ । ଦ୍ୱାଦଶମାତ୍ରା କାଳରେ ନିଷ୍ପନ୍ନ ହେଉଥିବାରୁ ମନ୍ଦ ପ୍ରାଣାୟାମ ଅଟେ । ତିନି ଚୁଟ୍‌କି ବଜାଇବାରେ ଯେତିକି ସମୟ ଲାଗେ ତାକୁ ମାତ୍ରା କୁହାଯାଏ। ଚବିଶମାତ୍ରାବାଲା ମଧ୍ୟମ ଓ ଛତିଶମାତ୍ରାବାଲାକୁ ଉତ୍ତମ କୁହାଯାଏ । ଏହିପରି ପ୍ରାଣାୟାମର ଅଭ୍ୟାସର ବିଧାନ ଅଟେ ।

ଯଃ ସ୍ୱେଦକମ୍ପନୋଚ୍ଛ୍ୱାସଜନକସ୍ତୁ ଯଥାକ୍ରମମ୍ ।
ସଂଯୋଗଷ୍ଚ ମନୁଷ୍ୟାଣାମାନନ୍ଦାଚ୍ଚୋତ୍ତମୋତ୍ତମଃ ।।୩୩
ସୁନଫାଖ୍ୟଂ ହିତଂ ଯୋଗଂ ସଗର୍ଭବିଜୟନ୍ତୁଧାଃ ।
ଏତଦ୍ୱୈ ଯୋଗିନଃ ପ୍ରାହୁଃ ପ୍ରାଣାୟାମସ୍ୟ ଲକ୍ଷଣମ୍ ।।୩୪
ସବ୍ୟାହୃତିଂ ସ ପ୍ରଣବାଂ ଗାୟତ୍ରୀଂ ଶିରସା ସହ ।
ତ୍ରିର୍ଜପେଦାୟତ ପ୍ରାଣଃ ପ୍ରାଣାୟାମୋଽଥ ନାମତଃ ।।୩୫

ଯେଉଁ ପ୍ରାଣବୃତ୍ତିର ନିରୋଧରେ ଯଥାକ୍ରମେ ସ୍ୱେଦ, କମ୍ପନ, ଉଚ୍ଛ୍ୱାସ ଆଦିର ଉତ୍ପତ୍ତି ହୋଇଥାଏ ଏବଂ ମନୁଷ୍ୟର ଆନନ୍ଦରୁ ବିଚିତ୍ର ଆନନ୍ଦର ଅନୁଭୂତି ହୋଇଥାଏ । ଏହାକୁ ସୁନପା ଯୋଗ ବା ସଗର୍ଭ ବିଜୟ ନାମରେ ଅଭିହିତ କରାହୋଇଥାଏ । ଯୋଗିମାନଙ୍କର ପ୍ରାଣାୟାମର ଏହି ଲକ୍ଷଣ ବୁଝାଯାଏ ଯେ ଶିରୋମନ୍ତ୍ର, ବ୍ୟାହୃତି, ପ୍ରଣବ ସହିତ ପ୍ରାଣର ନିରୋଧ କରି ତିନିବାର ଗାୟତ୍ରୀ ଜପକୁ କେବଳ ନାମକୁ ପ୍ରାଣାୟାମ କୁହାଯାଏ ।

**ରେଚକଃ ପୁରକଶ୍ଚୈବ ପ୍ରାଣାୟାମୋଽଥ କୁମ୍ଭକଃ ।**
**ପ୍ରୋଚ୍ୟତେ ସର୍ବଶାସ୍ତ୍ରେଷୁ ଯୋଗିଭିର୍ଯତମାନସୈଃ ।।୩୬**
**ରେଚକୋ ବାହ୍ୟନିଃଶ୍ୱାସଃ ପୁରକସ୍ତନ୍ନିରୋଧନା ।**
**ସାମ୍ୟେନ ସଂସ୍ଥିତିର୍ଯା ସା କୁମ୍ଭକଃ ପରିଗୀୟତେ ।।୩୭**

ଯୋଗାଭ୍ୟାସରେ ମନ ଅତ୍ୟନ୍ତ ଶୁଦ୍ଧ ହୋଇଥାଏ । ଏହିପରି ଯୋଗିଜନ ରେଚକ, ପୁରକ ଓ କୁମ୍ଭକର ଭେଦର ତିନି ପ୍ରକାରର ପ୍ରାଣାୟାମର ସ୍ୱରୂପକୁ ଯୋଗଶାସ୍ତ୍ରରେ ପ୍ରତିପାଦନ କରିଛନ୍ତି । ଅନ୍ତଃସ୍ଥିତ ବାୟୁ ବାହାରକୁ ବାହାରିବା ରେଚକ ଅଟେ । ବାହ୍ୟଗତିକୁ ନିରୋଧର ନାମ ପୁରକ । ସମଭାବରେ ଯେତେବେଳେ ପ୍ରାଣର ସ୍ଥିତି ହୋଇଥାଏ ତାକୁ କୁମ୍ଭକ କୁହାଯାଇଥାଏ । 'ଶ୍ୱାସପ୍ରଶ୍ୱାସୟୋର୍ଗତିବିଚ୍ଛେଦଃ ପ୍ରାଣାୟାମଃ' (ଯୋ.ଦ. ୨/୪୯) । ଅର୍ଥାତ୍ ଶ୍ୱାସ ପ୍ରଶ୍ୱାସର ନହେବା ହିଁ ପ୍ରାଣାୟାମର ସିଦ୍ଧିର ଲକ୍ଷଣ ଅଟେ । ଏହା ପ୍ରାଣାୟାମର ସାମାନ୍ୟ ଲକ୍ଷଣର ସ୍ୱରୂପ କୁହାଗଲା । ଏହାର ଅଧିକ ବିସ୍ତାର ଯୋଗଶାସ୍ତ୍ରର ପୁସ୍ତକରେ ମିଳିବ ।

**ଇନ୍ଦ୍ରିୟାଣାଂ ବିଚରତାଂ ବିଷୟେଷୁ ସ୍ୱଭାବତଃ ।**
**ନିଗ୍ରହଃ ପ୍ରୋଚ୍ୟତେ ସଦ୍‌ଭିଃ ପ୍ରତ୍ୟାହାରସ୍ତୁ ସତ୍ତମାଃ ।।୩୮**
**ହୃତ୍‌ପୁଣ୍ଡରୀକେ ନାଭ୍ୟାଂ ବା ମୂର୍ଦ୍ଧ୍ନି ପର୍ବସୁ ମସ୍ତକେ ।**
**ଏବମାଦିଷୁ ଦେଶେଷୁ ଧାରଣାଚିତ୍ତବନ୍ଧନମ୍ ।।୩୯**
**ଦେଶାବସ୍ଥିତିମାଲମ୍ବ୍ୟ ଉର୍ଦ୍ଧ୍ୱଂ ଯା ବୃତ୍ତିସନ୍ତତିଃ ।**
**ପ୍ରତ୍ୟନ୍ତରୈରସୃଷ୍ଟା ଯା ତଦ୍ଧ୍ୟାନଂ ସୁରୟୋ ବିଦୁଃ ।।୪୦**
**ଏକାକାରଃ ସମାଧିଃ ସ୍ୟାଦ୍ଦେଶାଲମ୍ବନବର୍ଜିତଃ ।**
**ପ୍ରତ୍ୟୟୋ ହ୍ୟର୍ଥମାତ୍ରେଣ ଯୋଗସାଧନମୁତ୍ତମମ୍ ।।୪୧**

ସ୍ୱଭାବତଃ ବିଷୟବୃତ୍ତି ରଖୁଥିବା ଇନ୍ଦ୍ରିୟର ନିଗ୍ରହକୁ ମୁନିଗଣ ପ୍ରତ୍ୟାହାର କହିଛନ୍ତି । ଏହି ବିଷୟରେ ମହର୍ଷି ପତଞ୍ଜଳିଙ୍କର ପ୍ରମାଣ 'ସ୍ୱବିଦ୍ୟୟା ସମ୍ପ୍ରୟୋଗେ ଚିତ୍ତସ୍ୟ ସ୍ୱରୂପାନୁକାର ଇନ୍ଦ୍ରିୟାଣି ପ୍ରତ୍ୟାହାରଃ'' (ଯୋ.ଦ. ୨/୫୪) ଅର୍ଥ ସ୍ପଷ୍ଟ ଅଟେ । ହୃଦୟ କମଳରେ ନାଭି ପ୍ରଦେଶରେ ମୂର୍ଦ୍ଧା ସ୍ଥାନରେ ତ୍ରିକୁଟିରେ ଯେଉଁ ମସ୍ତକ ଅଥବା ଚିତ୍ତର ସ୍ଥିତିଯୋଗ୍ୟ କୌଣସି ସ୍ଥାନରେ ଚିତ୍ତ ଲଗାଇବା ନାମ ଧାରଣା । କୌଣସି ଦେଶ ବିଶେଷରେ ଚିତ୍ତବୃତ୍ତି ପ୍ରବାହକୁ ଅନ୍ୟ ବିଷୟରୁ ହଟାଇ ଏକାକାର କରିବା ଉଚିତ୍ । 'ତତ୍ର ପ୍ରତ୍ୟୈକତାନତା ଧ୍ୟାନମ୍' (ଯୋ.ଦ. ୩/୩) । ଏହି

ପ୍ରକାର ଯେତେବେଳେ ଚିତ୍ତର ସ୍ଥିତି ନିର୍ଦୋଷ ସ୍ୱରୂପାତ୍ମ ହୋଇକରି ଏକାକାର ହୋଇଯାଏ ଏବଂ ଦେଶ ବିଶେଷର ଅବଲମ୍ବନ ଛାଡ଼ିଯାଏ । ଅର୍ଥମାତ୍ର କେବଳ ଜ୍ଞାନ ରହେ ଏହାକୁ ସମାଧି କହନ୍ତି । 'ତଦେବାର୍ଥମାତ୍ର-ନିର୍ଭାସଂ ସ୍ୱରୂପଂ ଶୂନ୍ୟମିବ ସମାଧିଃ' (ଯୋ.ଦ. ୩/୭) ଶ୍ଳୋକରେ ସମାଧିର ଲକ୍ଷଣ ସୂତ୍ରାର୍ଥରେ ସମାଧିର ଲକ୍ଷଣ ଏକ ଅଟେ ।

**ଧାରଣା ଦ୍ୱାଦଶା ଯାମା ଧ୍ୟାନଂ ଦ୍ୱାଦଶଧାରଣା ।**
**ଧ୍ୟାନଂ ଦ୍ୱାଦଶକଂ ଯାବତ୍ ସମାଧିରଭିଧୀୟତେ ॥୪୨**

ବାର (୧୨) ଯାମ (ପ୍ରହର) ଦେଶ ବିଶେଷରେ ସ୍ଥିରତା ପୂର୍ବକ ଚିତ୍ତକୁ ଲଗାଇବା ଧାରଣାର ସିଦ୍ଧି ହୋଇଥାଏ । ଏହିପରି ଦ୍ୱାଦଶ ଧାରଣା କଲେ ଧ୍ୟାନର ସିଦ୍ଧି କୁହାଯାଏ । ଏହିପରି ବାରଥର ଧ୍ୟାନ କରିଲେ ସମାଧି ହୋଇଥାଏ ।

**ଆସନଂ ସ୍ୱସ୍ତିକଂ ପ୍ରୋକ୍ତଂ ପଦ୍ମମର୍ଦ୍ଧାସନଂ ତଥା ।**
**ସାଧନାନାଂ ଚ ସର୍ବେଷାମେତତ୍ସାଧନମୁତ୍ତମମ୍ ॥୪୩**
**ଊର୍ଦ୍ଧ୍ୱରୁପରି ବିପ୍ରେନ୍ଦ୍ରାଃ କୃତ୍ୱା ପାଦତଲେ ଉଭେ ।**
**ସମାସୀନାତ୍ମନଃ ପଦ୍ମମେତଦାସନମୁତ୍ତମମ୍ ॥୪୪**
**ଉଭେ କୃତ୍ୱା ପାଦତଲେ ଜାନୂର୍ବୋରନ୍ତରେଣ ହି ।**
**ସମାସୀନାତ୍ମନଃ ପ୍ରୋକ୍ତମାସନଂ ସ୍ୱସ୍ତିକଂ ପରମ୍ ॥୪୫**
**ଏକଂ ପାଦମଥୈକସ୍ମିନ୍ୱିଷ୍ଟଭ୍ୟୋରସି ସତ୍ତମାଃ ।**
**ଆସିନାର୍ଦ୍ଧାସନମିଦଂ ଯୋଗସାଧନମୁତ୍ତମମ୍ ॥୪୬**

ଯୋଗାଭ୍ୟାସର ଉପଯୋଗୀ ଆଠ ଅଙ୍ଗକୁ ଆସନର ସ୍ୱରୂପକୁ କୁହାଗଲା- ସ୍ୱସ୍ତିକାସନ, ପଦ୍ମାସନ ଓ ଅର୍ଦ୍ଧାସନ – ଏହି ତିନି ମୁଖ୍ୟ ଅଟେ । ଯାହା ଯୋଗର ସାଧନା କୁହାଗଲା । ସେଥିମଧ୍ୟରୁ ଆସନର ଅଭ୍ୟାସ ମୁଖ୍ୟ ଅଟେ । ଯଦ୍ୟପି ଅନେକ ପ୍ରକାରର ଆସନ ଯୋଗଶାସ୍ତ୍ରରେ ସ୍ୱିକାର କରାଯାଇଛି ତଥାପି ପୂର୍ବୋକ୍ତ ତିନି ଆସନର ଅଭ୍ୟାସ ବିଶେଷତଃ ଉପଯୋଗୀ । ହେ ବ୍ରାହ୍ମଣ ! ଏହି ପ୍ରଦେଶର ଉପର ଦୁଇ ପାଦତଳୁ ଚଢ଼ାଇ ଯେଉଁ ଆସନ ଲଗାଯାଇଥାଏ ତାକୁ ପଦ୍ମାସନ କୁହାଯାଏ । ଯେତେବେଳେ ଦୁଇ ପାଦକୁ ଏହି ଭାଗର ତଳେ ରଖିକରି ବସାଯାଏ ତାକୁ ସ୍ୱସ୍ତିକାସନ କୁହାଯାଏ । ହେ ବ୍ରାହ୍ମଣ ! ହେ ମୁନିଶ୍ରେଷ୍ଠ ! ଯେ ପର୍ଯ୍ୟନ୍ତ ପାଦ ନିଜ ଛାତିରେ ଲଗାଇ କରି ବସିଯାଇ ପାରିବ ତାକୁ ଅର୍ଦ୍ଧାସନ କୁହାଯାଏ । ଏହି ଯୋଗସାଧନ ଅତି ଉତ୍ତମ ଅଟେ ।

ଅଦେଶକାଲେ ଯୋଗସ୍ୟ ଦର୍ଶନଂ ନ ହି ବିଦ୍ୟତେ ।
ଅଗ୍ନ୍ୟଭ୍ୟାସେ ଜଲେ ବାପି ଶୁଷ୍କପର୍ଣ୍ଣଚୟେ ତଥା ॥୪୭
ଜନ୍ତୁବ୍ୟାପ୍ତେ ଶ୍ମଶାନେ ଚ ଜୀର୍ଣ୍ଣଗୋଷ୍ଠେ ଚତୁଷ୍ପଥେ ।
ସ ଶବ୍ଦେ ସ ଭୟେ ବାପି ଚୈତ୍ୟ ବଲ୍ମୀକସଞ୍ଚୟେ ॥୪୮
ଅଶୁଭେ ଦୁର୍ଜନାକ୍ରାନ୍ତେ ମଶକାଦିସମନ୍ୱିତେ ।
ନଚରେଦ୍ଦେହ ବାଧେ ବାଦୌର୍ମନସ୍ୟାଦିସମ୍ଭବେ ॥୪୯

କୁତ୍ସିତ ଦେଶ ଓ କାଳରେ ଯୋଗର ଅଭ୍ୟାସ କରାଯାଏ ନାହିଁ । ଯେପରି ଅଗ୍ନି ନିକଟରେ, ଜଳରେ, ଶୁଖିଲା ପତ୍ର ଉପରେ, ଯେଉଁଠାରେ ଅନେକ ଜୀବଙ୍କ ସମାଗମ ହୋଇଥାଏ, ଶ୍ମଶାନରେ, ଭାଙ୍ଗିଯାଇଥିବା ଗୋଶାଳାରେ, ମଣ୍ଡପ ଉପରେ, ଯେଉଁଠାରେ ବହୁତ ଶବ୍ଦ ହେଉଥିବ, ଭୟଯୁକ୍ତ ସ୍ଥାନରେ, ଯେଉଁଠି ଅନେକ ଦୀପ ଲାଗିଥିବ, ଅଶୁଭ ସ୍ଥାନରେ, ଦୁର୍ଜନ ପରିପୂର୍ଣ୍ଣ ସ୍ଥାନରେ, ଯେଉଁଠି ମାଛିମଶା ବହୁତ ଥିବେ, ଯେଉଁଠି ଦେହକୁ କଷ୍ଟ ହେଉଥିବ, ମନରେ କୌଣସି ବିକାର ଥିବ, ନାସ୍ତିକମାନଙ୍କର ବନ୍ଦନୀୟ ସ୍ଥାନ ହୋଇଥିବ - ଏପରି ସ୍ଥାନରେ ଯୋଗାଭ୍ୟାସ କରାଯାଏ ନାହିଁ । ଏହି ବିଷୟରେ ଶ୍ରୁତିରେ ମଧ୍ୟ କୁହାଯାଇଛି ''ସମେ ଶୁଚୌ ଶର୍କରାବହ୍ନିବାଲୁକାବିବର୍ଜିତେ ଶବ୍ଦଜଲାଶ୍ରୟାଦିଭିଃ । ମନୋଽନୁକୂଲେ ନ ତୁ ଚକ୍ଷୁପୀଡନେ ଗୁହାନିବାତାଶ୍ରୟଣେ ପ୍ରୟୋଜୟେତ୍'' (ଶ୍ୱେ.ଉ. ୨/୧୦) ଅର୍ଥାତ୍ ସମାନ ପବିତ୍ର ବାଲୁକା ଅଗ୍ନି ଆଦି ନଥିବା ଶବ୍ଦ ଜଳାଶୟାଦିରୁ ମନ ଅନୁକୂଳ ଦେଶ, ଚକ୍ଷୁପୀଡା ପହଞ୍ଚାଉଥିବ, ମାଛିମଶାଦି ନଥିବ, ଗୁହା ନିର୍ବାତ ସ୍ଥାନରେ ଯୋଗାଭ୍ୟାସ କରିବା ଉଚିତ୍ ।

ସୁଗୁପ୍ତେ ସୁଶୁଭେ ଦେଶେ ଗୁହାୟାଂ ପର୍ବତସ୍ୟ ଚ ।
ନଦ୍ୟାସ୍ତୀରେ ପୁଣ୍ୟଦେଶେ ଦେବତାୟତନେ ତଥା ॥୫୦
ଗୃହେ ବା ସୁଶୁଭେ ରମ୍ୟେ ନିର୍ଜନେ ଜନ୍ତୁବର୍ଜିତେ ।
ଯୁଞ୍ଜୀତ ଯୋଗଂ ସତତମାତ୍ମାନଂ ମତ୍ପରାୟଣଃ ॥୫୧
ନମସ୍କୃତ୍ୟାର୍ଥ ଯୋଗୀନ୍ଦ୍ରାଞ୍ଛିଷ୍ୟାଂଶ୍ଚୈବ ବିନାୟକମ୍ ।
ଗୁରୁଞ୍ଚୈବ ଚ ମାଂ ଯୋଗୀ ଯୁଞ୍ଜୀତ ସୁସମାହିତଃ ॥୫୨
ଆସନଂ ସ୍ୱସ୍ତିକଂ ବଦ୍ଧ୍ୱା ପଦ୍ମମର୍ଦ୍ଧମଥାପି ବା ।
ନାସିକାଗ୍ରେ ସମାଂ ଦୃଷ୍ଟିମୀଷଦୁନ୍ମୀଲିତେକ୍ଷଣଃ ॥୫୩

ସୁରକ୍ଷିତ ସୁନ୍ଦର ଦେଶରେ ତଥା ପର୍ବତର ଗୁହା ମଧ୍ୟରେ, ନଦୀ ତଟରେ, ପୁଣ୍ୟକ୍ଷେତ୍ର ଏବଂ ଦେବମନ୍ଦିରରେ, ରମଣୀୟ ଘର ନିର୍ମାଣ କରି ନିର୍ଜନ ପ୍ରଦେଶରେ, ଜନ୍ତୁଶୂନ୍ୟ ସ୍ଥାନରେ, ସତ୍ୟପରାୟଣ ହୋଇ ଯୋଗରେ ସଂଲଗ୍ନ ହେବା ଉଚିତ୍ । ସର୍ବପ୍ରଥମ ଯୋଗୀରାଜଙ୍କୁ ତଥା ତାଙ୍କ ସିଦ୍ଧ ଶିଷ୍ୟଙ୍କୁ ବିନାୟକଙ୍କୁ ଏବଂ ଶ୍ରୀଗୁରୁ ମତେ ନମସ୍କାର କରି ସମାହିତ ଚିତ୍ତବୃତ୍ତିରେ ଯୋଗାଭ୍ୟାସ କରିବା ଉଚିତ୍। ସ୍ୱସ୍ତିକ ପଦ୍ମାସନ ଅଥବା ଅଧାସନକୁ ବାନ୍ଧିକରି ଆଖିକୁ ଅଧା ବନ୍ଦ କରି ଦୃଷ୍ଟିକୁ ନାସିକାର ଅଗ୍ରଭାଗରେ ଲଗାଇ ଯୋଗ କରିବା ଉଚିତ୍ ।

**କୃତ୍ୱାଽଥ ନିର୍ଭୟଃ ଶାନ୍ତସ୍ତ୍ୟକ୍ତ୍ୱା ମାୟାମୟଂ ଜଗତ୍ ।**
**ସ୍ୱାତ୍ମନ୍ୟବସ୍ଥିତଂ ଦେବଂ ଚିନ୍ତୟେତ୍ପରମେଶ୍ୱରମ୍ ॥୪୫**
**ଶିଖାଗ୍ରେ ଦ୍ୱାଦଶାଙ୍ଗୁଲ୍ୟେ କଳ୍ପୟିତ୍ୱାଥ ପଙ୍କଜମ୍ ।**
**ଧର୍ମକନ୍ଦସମୁଦ୍ଭୂତଂ ଜ୍ଞାନନାଳଂ ସୁଶୋଭନମ୍ ॥୫୫**
**ଐଶ୍ୱର୍ଯ୍ୟାଷ୍ଟଦଳଂ ଶ୍ୱେତଂ ପରଂ ବୈରାଗ୍ୟକର୍ଣ୍ଣିକାମ୍ ।**
**ଚିନ୍ତୟେତ୍ପରମଂ କୋଶଂ କର୍ଣ୍ଣିକାୟାଂ ହିରଣ୍ମୟମ୍ ॥୫୬**
**ସର୍ବଶକ୍ତିମୟଂ ସାକ୍ଷାଦ୍ୟଂ ପ୍ରାହୁର୍ଦିବ୍ୟମବ୍ୟୟମ୍ ।**
**ଓଁକାରବାଚ୍ୟମବ୍ୟକ୍ତଂ ରଶ୍ମିଜ୍ୱାଳାସମାକୁଳମ୍ ॥୫୭**

ପୂର୍ବୋକ୍ତ ଶ୍ଳୋକରେ କୁହାଯାଇଥିବା ଅର୍ଥ ଅନୁସାରେ ସମସ୍ତ ସାମଗ୍ରୀ ଏକତ୍ର କରି ନିର୍ଭୟ, ଶାନ୍ତ ଓ ମାୟାମୟ ସଂସାରକୁ ଛାଡ଼ି ଆତ୍ମାରେ ରହି ପରମାତ୍ମାଙ୍କୁ ଚିନ୍ତନଦ୍ୱାରା ସାକ୍ଷାତ କର । ଯାହାର କଳ୍ପନାର ଚିନ୍ତନ ଏହି ପ୍ରକାର କରନ୍ତୁ ଧର୍ମରୂପ ମୂଳରୁ ଏହି କମଳ ଜ୍ଞାନରୂପୀ ନାଳରୁ ବାହାରି ସୁଶୋଭିତ ହୋଇଥାଏ । ଅଷ୍ଟ ଐଶ୍ୱର୍ଯ୍ୟ ଅର୍ଥାତ୍ ଅଷ୍ଟଦଳ ପଦ୍ମ ସହ ଲାଗିଥାଏ । ବୈରାଗ୍ୟ ଏହାର ମଧ୍ୟଭାଗ ଅଟେ । ଏହି ମଧ୍ୟଭାଗରେ ପରମ କୋଷ ସ୍ୱରୂପ ହିରଣ୍ମୟ ସ୍ୱର୍ଣ୍ଣମୟ ସର୍ବଶକ୍ତିମୟ ଯାହାକୁ ସାକ୍ଷାତ୍ ଅବ୍ୟୟ ଦିବ୍ୟ କୁହାଯାଏ। ଯାହା ଓଁକାରର ଅର୍ଥ ଅବ୍ୟକ୍ତ ଓ ନାନାପ୍ରକାରର ରଶ୍ମିଜ୍ୱାଳାରୁ ବ୍ୟାପ୍ତ ହୋଇଥାଏ, ତାହା ଚିନ୍ତନ କର ।

**ଚିନ୍ତୟେତ୍ତ୍ର ବିମଳଂ ପରଂ ଜ୍ୟୋତିର୍ଯଦକ୍ଷରମ୍ ।**
**ତସ୍ମିନ୍ ଜ୍ୟୋତିଷି ବିନ୍ୟସ୍ୟ ସ୍ୱାତ୍ମାନଂ ତଦଭେଦତଃ ॥୫୮**
**ଧ୍ୟାୟୀତ କୋଶମଧ୍ୟସ୍ଥମୀଶଂ ପରମକାରଣମ୍ ।**
**ତଦାତ୍ମା ସର୍ବଗୋଭୂତ୍ୱା ନ କିଞ୍ଚିଦପି ଚିନ୍ତୟେତ୍ ॥୫୯**

ଏତଦ୍‌ଗୁହ୍ୟତମଂ ଜ୍ଞାନଂ ଧ୍ୟାନାନ୍ତରମଥୋଚ୍ୟତେ ।
ଚିନ୍ତୟିତ୍ୱା ତୁ ପୂର୍ବୋକ୍ତଂ ହୃଦୟେ ପଦ୍ମମୁତ୍ତମମ୍ ॥୬୦

ସେହି ବିମଳ ନାନା ପ୍ରକାରର କିରଣଦ୍ୱାରା ବିଭୂଷିତ ପଦ୍ମଜ୍ୟୋତିର ଯାହା ଅବିନାଶୀ ଅଟେ । ଚିନ୍ତା କର ଏବଂ ଏହି ଜ୍ୟୋତିରେ ନିଜ ଆତ୍ମାକୁ ଅଭେଦ ରୂପରେ ବିନ୍ୟାସ କର । ଏହା ପଛରେ କୋଷର ମଧ୍ୟରେ ସ୍ଥିତ ପରମ କାରଣ ଈଶ୍ୱରଙ୍କୁ ଧ୍ୟାନଯୋଗରେ ଦେଖ । ଏହାର ତଦାତ୍ମ ଭାବରେ ଦେଖୁ ଦେଖୁ ଅନ୍ୟ କୌଣସି ବସ୍ତୁର ଚିନ୍ତନ କର ନାହିଁ । ଏହିପରି ଧ୍ୟାନ ପରେ ମୁଁ ଆପଣମାନଙ୍କୁ ଗୁହ୍ୟତମ ଜ୍ଞାନ ଶୁଣାଉଅଛି । ପୂର୍ବୋକ୍ତ ପ୍ରକାରରେ କୁହାଯାଇଥିବା ଭାବକୁ ନିଜ ମନରେ ଚିନ୍ତା କରିବା ପରେ ହୃଦୟପଦ୍ମର ଚିନ୍ତନ ଆରମ୍ଭ କର । ଏହାର କ୍ରମ ଏହିପ୍ରକାରର-

ଆତ୍ମାନମଥ କାନ୍ତାରଂ ତତ୍ରାନଳସମନ୍ୱିତମ୍ ।
ମଧ୍ୟେ ବହ୍ନିଶିଖାକାରଂ ପୁରୁଷଂ ପଞ୍ଚବିଂଶକମ୍ ॥୬୧
ଚିନ୍ତୟେତ୍ ପରମାତ୍ମାନଂ ତନ୍ମଧ୍ୟେ ଗଗନଂ ପରମ୍ ।
ଓଁକାରବୋଧିତଂ ତତ୍ତ୍ୱଂ ଶାଶ୍ୱତଂ ଶିବମୁଚ୍ୟତେ ॥୬୨

ନିଜ ଆତ୍ମାକୁ ବହୁତ ବଡ ଏବଂ ସାଧନତା ରୂପରେ ଚିନ୍ତା କର । ଏହା ମଧ୍ୟରେ ଅଗ୍ନି ପରି କାନ୍ତିଯୁକ୍ତ, ଅଗ୍ନିର ଶିଖା ପରି ପଚିଶି ତତ୍ତ୍ୱ ପୁରୁଷକୁ ଚିନ୍ତା କର। ଏହା ମଧ୍ୟରେ ଯେଉଁ ପରମାକାଶ ଅଛି, ସେହି ଓଁକାର ବୋଧିତ ପରମାତ୍ମାସ୍ୱରୂପ ସନାତନ ତତ୍ତ୍ୱ ଶିବ କୁହାଯାଏ ।

ଅବ୍ୟକ୍ତଂ ପ୍ରକୃତୌ ଲୀନଂ ପରଂ ଜ୍ୟୋତିରନୁତ୍ତମମ୍ ।
ତଦନ୍ତଃ ପରମଂ ତତ୍ତ୍ୱମାତ୍ମାଧାରଂ ନିରଞ୍ଜନମ୍ ॥୬୩
ଧ୍ୟାୟୀତ ତନ୍ମୟୋ ନିତ୍ୟମେକରୂପଂ ମହେଶ୍ୱରମ୍ ।
ବିଶୋଧ୍ୟ ସର୍ବତତ୍ତ୍ୱାନି ପ୍ରଣବେନାଥବା ପୁନଃ ॥୬୪
ସଂସ୍ଥାପ୍ୟମପି ଚାତ୍ମାନଂ ନିର୍ମଳେ ପରମେ ପଦେ ।
ପାବୟିତ୍ୱାତ୍ମନୋ ଦେହଂ ତେନୈବ ଜ୍ଞାନବାରିଣା ॥୬୫
ମଦାତ୍ମା ମନ୍ମନା ଭସ୍ମ ଗୃହୀତ୍ୱା ତ୍ୱଗ୍ନିହୋତ୍ରିକମ୍ ।
ତେନୋଦ୍ଧୂଳିତସର୍ବାଙ୍ଗମଗ୍ନି ରାଦିତ୍ୟମନ୍ତ୍ରତଃ ॥୬୬
ଚିନ୍ତୟେତ୍‌ସ୍ୱାତ୍ମନୀଶାନଂ ପରଂ ଜ୍ୟୋତିଃସ୍ୱରୂପିଣମ୍ ।
ଏଷ ପାଶୁପତୋ ଯୋଗଃ ପଶୁପାଶବିମୁକ୍ତୟେ ॥୬୭

ପ୍ରକୃତି ସହିତ ଲୀନ ଭାବକୁ ପ୍ରାପ୍ତ ହେଲାପରି ଅନୁତ୍ତମ ପରମ ଜ୍ୟୋତିଃସ୍ୱରୂପ ଅବ୍ୟକ୍ତ ମଧ୍ୟରେ ଆତ୍ମାଧାର, ନିରଞ୍ଜନ ସ୍ୱରୂପ ପରମ ତତ୍ତ୍ୱକୁ ତନ୍ମୟ ହୋଇ ପ୍ରଣବଦ୍ୱାରା ଜପରେ ସମସ୍ତ ତତ୍ତ୍ୱକୁ ଶୁଦ୍ଧ କରି ନିତ୍ୟ ଏକରୂପ ପରମେଶ୍ୱରଙ୍କୁ ଧ୍ୟାନ କର । ଅଥବା ନିର୍ମଳ ପରମ ପଦରେ ନିଜ ଆତ୍ମାକୁ ସ୍ଥାପିତ କରି ନିଜ ଦେହକୁ ଜ୍ଞାନରୂପୀ ଜଳରେ ପବିତ୍ର କରି ମତେ ନିଜ ସ୍ୱରୂପର ଏକଭାବନା କରି ମୋଠାରେ ମନକୁ ଲଗାଅ । ତଥା ଅଗ୍ନିହୋତ୍ରର ଭସ୍ମକୁ ଅଗ୍ନି ବା ସୂର୍ଯ୍ୟଙ୍କ ବୈଦିକ ମନ୍ତ୍ରରେ ଅଭିମନ୍ତ୍ରିତ କରି ସମସ୍ତ ଶରୀରରେ ଲଗାଅ । ଏହାପରେ ପରମଜ୍ୟୋତିସ୍ୱରୂପ ଈଶାନ ଶ୍ରୀମହେଶ୍ୱରଙ୍କ ଚିନ୍ତନ କର । ଏହାକୁ ପାଶୁପତ ଯୋଗ କୁହାଯାଏ । ଏହାଦ୍ୱାରା ପଶୁମାନଙ୍କର ପାଶରୁ ମୁକ୍ତ ହୋଇଥାଏ ଅର୍ଥାତ୍ ଜୀବ ଶିବରୂପ ହୋଇଯାଏ ।

**ସର୍ବବେଦାନ୍ତସାରୋ ଯମତ୍ୟାଶ୍ରମମିତି ଶ୍ରୁତିଃ ।**
**ଏତତ୍ପରତରଂ ଗୁହ୍ୟଂ ମତ୍ସାୟୁଜ୍ୟପ୍ରଦାୟକମ୍ ॥୬୮**
**ଦ୍ୱିଜାତୀନାଂ ତୁ କଥିତଂ ଭକ୍ତାନାଂ ବ୍ରହ୍ମଚାରିଣାମ୍ ।**
**ବ୍ରହ୍ମଚର୍ଯ୍ୟମହିଂସା ଚ କ୍ଷମାଶୌଚନ୍ତପୋଦମଃ ॥୬୯**
**ସନ୍ତୋଷଃ ସତ୍ୟମାସ୍ତିକ୍ୟଂ ବ୍ରତାଙ୍ଗାନି ବିଶେଷତଃ ।**
**ଏକେନାପ୍ୟଥ ହୀନେନ ବ୍ରତମସ୍ୟ ନ ସିଦ୍ଧ୍ୟତି ॥୭୦**

ଏହି ଯେଉଁ ରହସ୍ୟ ଆପଣ ସମସ୍ତଙ୍କୁ କୁହାଯାଉଛି ଏ ସମସ୍ତ ବେଦାନ୍ତସାର ଅଟେ । ଏହାକୁ ଶ୍ରୁତିରେ ଅତ୍ୟାଶ୍ରମ ପଦରେ ବ୍ୟବହାର କରାଯାଇଛି । ଏହି ପରମଗୁହ୍ୟ ରହସ୍ୟ ଆମ ସାୟୁଜ୍ୟକୁ ପ୍ରଦାନ କରିଥାଏ । ଯେଉଁମାନେ ଆମର ଭକ୍ତ ବ୍ରହ୍ମଚର୍ଯ୍ୟ ବ୍ରତିନିଷ୍ଠ ଦ୍ୱିଜାତିକୁଳୋତ୍ପନ୍ନ ଅଟନ୍ତି, ତାଙ୍କ ଲାଗି ମୁଁ ଏହା ଶୁଣାଇଲି । ବ୍ରହ୍ମଚର୍ଯ୍ୟ, ଅହିଂସା, କ୍ଷମା, ଶୌଚ, ତପଃ, ଦମ, ସନ୍ତୋଷ, ସତ୍ୟ ଏବଂ ଆସ୍ତିକ୍ୟ ଯେ ବ୍ରତର ଅଙ୍ଗ ବିଶେଷତଃ ଅନୁଷ୍ଠାନର ଯୋଗ୍ୟ ଅଟେ । ଏମାନଙ୍କ ମଧ୍ୟରୁ ଗୋଟିକର ଊଣା ହେଲେ ବ୍ରତ ପୂର୍ଣ୍ଣ ହେବ ନାହିଁ । ଏଣୁ ଆତ୍ମଗୁଣରେ ଯୁକ୍ତ ସାଧକଙ୍କୁ ବ୍ରତ ପୂର୍ଣ୍ଣରୂପରେ ପାଳନ କରି ଏହାର ପୂର୍ଣ୍ଣତା ଆଣିବା ଆବଶ୍ୟକ ।

**ତସ୍ମାଦାତ୍ମଗୁଣୋପେତୋ ମଦ୍‌ବ୍ରତଂ ବୋଢୁମର୍ହତି ।**
**ବୀତରାଗଭୟକ୍ରୋଧା ମନ୍ମୟା ମାମୁପାଶ୍ରିତାଃ ॥୭୧**
**ବହବୋଽନେନ ଯୋଗେନ ପୂତା ମଦ୍ଭାବମାଗତାଃ ।**
**ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହମ୍ ॥୭୨**

ଜ୍ଞାନଯୋଗେନ ମାଂ ତସ୍ମାଦ୍ୟଜେତ ପରମେଶ୍ୱରମ୍ ।
ଅଥବା ଭକ୍ତିଯୋଗେନ ବୈରାଗ୍ୟେଣ ପରେଣ ତୁ ॥୭୩
ଚେତସା ବୋଧଯୁକ୍ତେନ ପୂଜୟେନ୍ମାଂ ସଦା ଶୁଚିଃ ।
ସର୍ବକର୍ମାଣି ସଂନ୍ୟସ୍ୟ ଭିକ୍ଷାସୀ ନିଷ୍ପରିଗ୍ରହଃ ॥୭୪

ରାଗ, ଦ୍ୱେଷ ଏବଂ ଭୟଶୂନ୍ୟ ହୋଇ ମୋ ଭାବରେ ଲୀନ ହୋଇ ମୋର ଆଶ୍ରୟରେ ରହିଥିବା ବହୁତ ମହାନୁଭବ ପୂର୍ବୋକ୍ତ ଯୋଗ ଅନୁଷ୍ଠାନ କରି ପବିତ୍ର ହୋଇ ମଦ୍‌ଭାବ (ସାଯୁଜ୍ୟମୁକ୍ତି)କୁ ପ୍ରାପ୍ତ ହୋଇଥାନ୍ତି । ଯିଏ ଯେଉଁ ପ୍ରକାରରେ ମତେ ଭଜନ କରିଥାଏ, ତାକୁ ମୁଁ ମଧ୍ୟ ସେହି ପ୍ରକାରର ପ୍ରଦାନ କରିଥାଏ । ସବୁ ପ୍ରକାରର ଜ୍ଞାନଯୋଗଦ୍ୱାରା ମତେ ପୂଜା କରିବା ଉଚିତ୍ । ଯଦି ଆଶଙ୍କା ରହୁଛି ତେବେ ଭକ୍ତିଯୋଗଦ୍ୱାରା ଏବଂ ବୈରାଗ୍ୟରୁ ଜ୍ଞାନମୁକ୍ତ ଚିତ୍ତ ହୋଇ ଏବଂ ସର୍ବଦା ପବିତ୍ର ହୋଇ ମୋର ପୂଜା କର ଏବଂ ସମସ୍ତ କର୍ମ ତ୍ୟାଗ କରି ଭିକ୍ଷାମାତ୍ରରେ ଭୋଜନର ବ୍ୟବହାର କର । ଏହିପରି ପୁରୁଷ ସଂଗ୍ରହ ବୁଦ୍ଧି ତ୍ୟାଗ କରି ମୋର ସାଯୁଜ୍ୟକୁ ପ୍ରାପ୍ତ ହୋଇଥାଏ । ଏହା ଅତ୍ୟନ୍ତ ଗୋପନୀୟ ରହସ୍ୟ ମୁଁ ଆପଣଙ୍କୁ ଶୁଣାଉଛି ।

ପ୍ରାପ୍ନୋତି ମମ ସାଯୁଜ୍ୟଂ ଗୁହ୍ୟମେତନ୍ମୟୋଦିତମ୍ ।
ଅଦ୍ୱେଷ୍ଟା ସର୍ବଭୂତାନାଂ ମୈତ୍ରଃ କରୁଣ ଏବ ଚ ॥୭୫
ନିର୍ମମୋ ନିରହଙ୍କାରୋ ଯୋ ମଭକ୍ତଃ ସ ମେ ପ୍ରିୟଃ ।
ସନ୍ତୁଷ୍ଟଃ ସତତଂ ଯୋଗୀ ଯତାତ୍ମା ଦୃଢନିଶ୍ଚୟଃ ॥୭୬
ମୟର୍ପିତମନୋବୁଦ୍ଧିର୍ଯୋ ମଭକ୍ତଃ ସ ମେ ପ୍ରିୟଃ ।
ଯସ୍ମାନ୍ନୋଦ୍ୱିଜତେ ଲୋକୋ ଲୋକାନ୍ନୋଦ୍ୱିଜତେ ଚୟଃ ॥୭୭
ହର୍ଷାମର୍ଷଭୟୋଦ୍‌ବେଗୈର୍ଯୋ ମୁକ୍ତଃ ସ ଚ ମେ ପ୍ରିୟଃ ।
ଅନପେକ୍ଷଃ ଶୁଚିର୍ଦକ୍ଷ ଉଦାସୀନୋ ଗତବ୍ୟଥଃ ॥୭୮
ସର୍ବାରମ୍ଭପରିତ୍ୟାଗୀ ଭକ୍ତିମାନ୍ ଯଃ ସ ମେ ପ୍ରିୟଃ ।
ତୁଲ୍ୟନିନ୍ଦା ସ୍ତୁତିର୍ମୌନୀ ସନ୍ତୁଷ୍ଟୋ ଯେନ କେନଚିତ୍ ॥୭୯
ଅନିକେତଃ ସ୍ଥିରମତିର୍ମଭକ୍ତୋ ମାମୁପୈଷ୍ୟତି ।
ସର୍ବକର୍ମାଣ୍ୟପି ସଦା କୁର୍ବାଣୋ ମତ୍ପରାୟଣଃ ॥୮୦

ସମସ୍ତ ପ୍ରାଣୀଙ୍କ ସହିତ ଦ୍ୱେଷଭାବ ନ ରଖି ବ୍ୟବହାର କରୁଥିବା, ମିତ୍ରତା ଓ ଦୟାଳୁତାରେ ଯୁକ୍ତ ହୋଇ ମମତାଶୂନ୍ୟ ତଥା ନିରହଙ୍କାର ଭକ୍ତ ମୋର ପ୍ରିୟ

ଅଟେ । ଯିଏ ସନ୍ତୋଷରୂପୀ ଧନରେ ତୃପ୍ତ, ଯେ ସର୍ବଦା ଯୋଗାଭ୍ୟାସରେ ପ୍ରବୃତ୍ତ । ଯାହା ମନରେ ସଙ୍କଳ୍ପ ଓ ବିକଳ୍ପ ନିରୁଦ୍ଧ ଅଟେ ଏବଂ ଯାହା ମନ ନିଶ୍ଚୟ ଓ ଦୃଢ଼ ଅଟେ ତଥା ଯିଏ ମନ ଓ ବୁଦ୍ଧିକୁ ମତେ ଅର୍ପଣ କରିଥାଏ ସେ ଭକ୍ତ ମୋର ପ୍ରିୟ ଅଟେ । ଯିଏ କାହାକୁ ହେଲେ ଭୟ ପ୍ରଦର୍ଶନ କରାଏ ନାହିଁ, ଯିଏ ସନ୍ନ୍ୟାସୀ କାହାକୁ ପୀଡା ଦିଏ ନାହିଁ ଏବଂ ଯିଏ ହର୍ଷ, ଅସହିଷ୍ଣୁତା, ଭୟ, ଉଦ୍‌ବିଗ୍ନତା ଆଦିରୁ ମୁକ୍ତ ଅଟେ ସେ ଭକ୍ତ ମୋର ଅତ୍ୟନ୍ତ ପ୍ରିୟ ଅଟେ । ଯାହାର କାହା ପ୍ରତି ଅପେକ୍ଷା ନାହିଁ, ଯିଏ ସର୍ବଦା ଶୁଚିଭାବ ଅଟେ । ମଧୁର, ଉଦାସୀନ, ସର୍ବଦା ପ୍ରସନ୍ନତା ସମସ୍ତ କର୍ମ ତ୍ୟାଗୀ ଏଂ ଭକ୍ତିମାନ୍ । ଏହି ପୁରୁଷ ମୋର ଅତ୍ୟନ୍ତ ପ୍ରିୟ । ନିନ୍ଦା ଓ ସ୍ତୁତି ଯାହାପାଇଁ ସମାନ ଏବଂ ଯିଏ ବାଣୀରେ ନିୟମବାଲା ଅଟେ, ଯିଏ ଶରୀର ନିର୍ବାହ ପାଇଁ ଉଚିତ ଉପଯୋଗୀ ଦ୍ରବ୍ୟରେ ପ୍ରସନ୍ନ ରହିଥାଏ । କୌଣସି ନିର୍ଦ୍ଦିଷ୍ଟ ସ୍ଥାନରେ ବହୁତ ସମୟ ପର୍ଯ୍ୟନ୍ତ ନିବାସ କରି ନଥାଏ । ସ୍ଥିରମତି, ମୋର ଭକ୍ତ ସେ ମୋର ବହୁତ ପ୍ରିୟ ଓ ସେ ମୋତେ ପ୍ରାପ୍ତ କରିଥାଏ । ସେ ମଧ ଯିଏ ମୋ ପାଇଁ ତତ୍ପର ହୋଇ ସର୍ବଦା ଲୋକସଂଗ୍ରହ ବୁଦ୍ଧିରେ କାମରେ ଲାଗିଥାଏ ।

ମତ୍‌ପ୍ରସାଦାଦବାପ୍ନୋତି ଶାଶ୍ୱତଂ ପରମଂ ପଦମ୍ ।
ଚେତସା ସର୍ବକର୍ମାଣି ମୟି ସଂନ୍ୟସ୍ୟ ମତ୍ପରଃ ॥୮୧
ନିରାଶୀର୍ନିର୍ମମୋ ଭୂତ୍ୱା ମାମେକଂ ଶରଣଂ ବ୍ରଜେତ୍ ।
ତ୍ୟକ୍ତ୍ୱା କର୍ମ ଫଳାସଙ୍ଗଂ ନିତ୍ୟତୃପ୍ତୋ ନିରାଶ୍ରୟଃ ॥୮୨
କର୍ମଣ୍ୟପି ପ୍ରବୃତ୍ତୋଽପି କର୍ମଣା ନୈବ ବଧ୍ୟତେ ।
ନିରାଗୀ ଯତଚିତ୍ତାତ୍ମା ତ୍ୟକ୍ତ ସର୍ବ ପରିଗ୍ରହଃ ॥୮୩

ସେ ମଧ ଆମର ପ୍ରସନ୍ନତା ପାଇଁ ଶାଶ୍ୱତ ପଦ ପ୍ରାପ୍ତି ହୋଇଥାଏ । ଯିଏ ଚିତ୍ତରେ ସମସ୍ତ କର୍ମ ତ୍ୟାଗ କରି ଅଥବା ମତେ ନ୍ୟାସ କରି ମତ୍ପରାୟଣ ହୋଇଥାଏ ଓ ଆଶା ଏବଂ ମମତ୍ୱଶୂନ୍ୟ ହୋଇ ଏକମାତ୍ର ମୋର ଶରଣରେ ଆସିଥାଏ ସେ ସମସ୍ତ କର୍ମଫଳକୁ ଛାଡ଼ି ନିରାଶ୍ରୟ ଏବଂ ନିତ୍ୟ ତୃପ୍ତ ହୋଇ କର୍ମରେ ପ୍ରବୃତ୍ତ ହୋଇଥାଏ । ପ୍ରବୃତ୍ତ ହୋଇ ମଧ କର୍ମଫଳରେ ବନ୍ଧନପ୍ରାପ୍ତ ହୋଇ ନଥାଏ । ସାଂସାରିକ ସମସ୍ତ ଭୋଗର ଆଶା ଶୂନ୍ୟ ହୋଇ ମନକୁ ସଙ୍କଳ୍ପ ଆଦିକୁ ଯିଏ ନିରୋଧ କରି ନେଇଥାଏ, ସେହି ପୁରୁଷ କେବଳ ଶାରୀରିକ କର୍ମ କରି କରି କିଛିହେଲେ ଦୋଷର ଭୋଗୀ ହୋଇ ନଥାଏ । କାରଣ ସେ ସମସ୍ତ ପରିଗ୍ରହକୁ ତ୍ୟାଗ କରିଥାଏ ।

ଶରୀରଂ କେବଳଂ କର୍ମ କୁର୍ବନ୍ନାପ୍ନୋତି କିଲ୍ବିଷମ୍ ।
ଯଦୃଚ୍ଛାଲାଭତୃପ୍ତସ୍ୟ ଦ୍ୱନ୍ଦ୍ୱାତୀତସ୍ୟ ଚୈବ ହି ॥୮୪
କୁର୍ବତୋ ମତ୍ପ୍ରସାଦାର୍ଥଂ କର୍ମସଂସାରନାଶନମ୍ ।
ମନ୍ମନା ମନ୍ନମସ୍କାରୋ ମଦ୍ୟାଜୀ ମତ୍ପରାୟଣଃ ॥୮୫
ମାମୁପାସ୍ୟତି ଯୋଗୀଶୋ ଜ୍ଞାତା ମାଂ ପରମେଶ୍ୱରମ୍ ।
ମାମୋ ବାହୁଃ ପରଂ ଜ୍ୟୋତିର୍ବୋଧୟନ୍ତଃ ପରସ୍ପରମ୍ ॥୮୬
କଥୟନ୍ତଶ୍ଚ ମାଂ ନିତ୍ୟଂ ମମ ସାଯୁଜ୍ୟମାପ୍ନୁୟୁଃ ।
ଏବଂ ନିତ୍ୟାଭିଯୁକ୍ତାନାଂ ମାୟେୟଂ କର୍ମ ସତ୍ୱରମ୍ ॥ ୮୭

ଯାହା କିଛି ଈଶ୍ୱରଙ୍କ ଇଚ୍ଛାରେ ପ୍ରାପ୍ତ ହୁଏ ସେଥିରେ ତୃପ୍ତ ରହିବା ଏବଂ ସୁଖ-ଦୁଃଖ, ଶୀତୋଷ୍ଣ, ଭୋକ-ଶୋଷ ଆଦି ଦ୍ୱନ୍ଦ୍ୱରେ ସମଭାବ ଯେଉଁ ମହାପୁରୁଷର ରହିଥାଏ । ସେ ମୋର ପ୍ରସନ୍ନତା ପାଇଁ କର୍ମ କରୁଥାଏ । ସେ ଶ୍ରେଷ୍ଠ ଅଟେ । ତାର କର୍ମସଂସାରେ ନିବାସ ହେତୁ କରିଥାଏ ଅର୍ଥାତ୍ ମୋକ୍ଷ ପାଇଁ ଏହା ଆରମ୍ଭ ମାତ୍ର । ତାର ମନ ସର୍ବଦା ମୋତେ ଅର୍ପଣ କରିଥାଏ । ଯିଏ ମତେ ନମସ୍କାର କରିଥାଏ, ମତେ ପୂଜା କରିଥାଏ ଏବଂ ମୋ ପ୍ରତି ସର୍ବଦା ସଂଲଗ୍ନ ରହିଥାଏ ସେହି ଲକ୍ଷଣଯୁକ୍ତ ଯୋଗୀ ମତେ ପରମେଶ୍ୱର ଜାଣିକରି ସର୍ବଦା ମୋର ଉପାସନା କରିଥାଏ । ପରସ୍ପର ବୋଧ ପ୍ରଦାନ କରୁଥିବା ସମୟରେ ସେହି ମହାତ୍ମା ମୋର ପରମଜ୍ୟୋତି ବର୍ଣ୍ଣନା କରିଥାଏ । ନିତ୍ୟ ପ୍ରତି ମୋ ଚରିତ ବର୍ଣ୍ଣନା କରୁ କରୁ ଶେଷରେ ମୋର ସାଯୁଜ୍ୟ ଦଶା ପ୍ରାପ୍ତ କରିଥାଏ । ଏହିପରି ଯିଏ ସର୍ବଦା ମୋଠାରେ ଲୀନ ହୋଇ ରହିଥାଏ, ଏହି ପୁରୁଷଙ୍କୁ ସମସ୍ତ ମାୟା ବନ୍ଧନରୁ ନିବୃତ୍ତ ହୋଇ ତାଙ୍କ ହୃଦୟରେ ରହି ଅଜ୍ଞାନାନ୍ଧକାରକୁ ପ୍ରକାଶମାନ ଜ୍ଞାନ ଦୀପଦ୍ୱାରା ନାଶ କରି ଦେଇଥାଏ ।

ନାଶୟାମି ତମଃ କୃସ୍ନଂ ଜ୍ଞାନଦୀପେନ ଭାସ୍ୱତା ।
ମଦ୍‌ବୁଦ୍ଧୟୋ ମାଂ ସତତଂ ପୂଜୟନ୍ତୀହ ଯେ ଜନାଃ ॥୮୮
ତେଷାଂ ନିତ୍ୟାଭିଯୁକ୍ତାନାଂ ଯୋଗକ୍ଷେମଂ ବହାମ୍ୟହମ୍ ।
ଯେ ଚାନ୍ୟେ ଭୋଗକର୍ମାର୍ଥା ଯଜନ୍ତେ ହ୍ୟନ୍ୟଦେବତାଃ ॥୮୯
ତେଷାଂ ତଦନ୍ତଂ ବିଜ୍ଞେୟଂ ଦେବତାନୁଗତଂ ଫଳମ୍ ।
ଯେ ଚାନ୍ୟେ ଦେବତାଭକ୍ତାଃ ପୂଜୟନ୍ତୀହ ଦେବତାଃ ॥୯୦

ମଦ୍‌ଭାବନାସମାଯୁକ୍ତା ମୁଚ୍ୟନ୍ତେ ତେଽପି ମାନବାଃ ।
ତସ୍ମାଦ୍ୱିନଶ୍ୱରାନନ୍ୟାଂସ୍ତ୍ୟକ୍ତ୍ୱା ଦେବାନଶେଷତଃ ॥୯୧
ମାମେବ ସଂଶ୍ରୟେଦୀଶଂ ସ ଯାତି ପରମଂ ପଦମ୍ ।
ତ୍ୟକ୍ତ୍ୱା ପୁତ୍ରାଦିଷୁ ସ୍ନେହଂ ନିଃଶୋକୋ ନିଷ୍ପରିଗ୍ରହଃ ॥୯୨

ଯେଉଁ ଜନ ମତେ ନିଜ ବୁଦ୍ଧିବୃତ୍ତିକୁ ଲଗାଇ ସର୍ବଦା ମୋର ପୂଜା କରୁଥାଏ ଏବଂ ପ୍ରତ୍ୟେକ ସମୟ ମୋର ଚିନ୍ତନରେ ସଂଲଗ୍ନ ରହିଥାଏ, ତାହାର ସମସ୍ତ ପ୍ରକାର ଯୋଗକ୍ଷେମ ମୁଁ ପୂର୍ଣ୍ଣ କରିଥାଏ । ଯେଉଁ ଲୋକ ମତେ ଛାଡ଼ି ନାନାପ୍ରକାର କାମନାରେ ଚିତ୍ତ ଲଗାଇ ଅନ୍ୟ କଳ୍ପିତ ଦେବଙ୍କ ପୂଜା କରିଥାଏ । ତାଙ୍କର ଯେଉଁ ଫଳ ଅନ୍ୟ ଦେବତାଙ୍କଦ୍ୱାରା ମିଳିଥାଏ, ତାହା ବିନାଶୀ ଅଟେ । କାରଣ ମତେ ଛାଡ଼ି ଯେତେ ଦେବତା ଅଛନ୍ତି ସେ ସମସ୍ତେ ନାଶବାନ୍ ଅଟନ୍ତି ଏବଂ ଯେଉଁ ଲୋକ ଅନ୍ୟ ଦେବତାଙ୍କୁ ମୋର ଭାବନାରେ ପୂଜନ୍ତି ସେ କ୍ରମେ ମୁକ୍ତିପ୍ରାପ୍ତ ହୋଇଥାଆନ୍ତି । ଏଣୁ ବିନାଶୀ ସମସ୍ତ ଦେବଙ୍କୁ ଛାଡ଼ି ତଥା ପୁତ୍ରାଦି ସ୍ନେହ ତ୍ୟାଗ କରି ନିଃଶୋକ ନିଷ୍ପରିଗ୍ରହ ଭାବକୁ ଆଶ୍ରୟ କରି ଏ ସମସ୍ତ ଜଗତର ସ୍ୱାମୀ ମୁଁ ଈଶ୍ୱରଙ୍କୁ ଯେ ନିଜର ଆଶୟ ରୂପରେ ଭଜନ କରିଥାଏ । ସେ ପରମପଦ ସୁଖକୁ ପ୍ରାପ୍ତ ହୋଇଥାଏ । କାରଣ ଅନ୍ୟ ଦେବତାଙ୍କ ଭକ୍ତିରେ ଯେଉଁ ସୁଖ ମିଳେ ତାହା ବିନାଶୀ ହୋଇଥାଏ । ମୁଁ ନିତ୍ୟ, ଶୁଦ୍ଧ, ବୁଦ୍ଧ, ମୁକ୍ତ ଅଟେ । ଏଣୁ ମୋଠାରେ ଯେଉଁ ସୁଖ ମିଳେ ତାହା ନିତ୍ୟ ଅଟେ ।

ଯଜେଚ୍ଚାମରଣାଲିଙ୍ଗଂ ବିରକ୍ତଃ ପାରମେଶ୍ୱରମ୍ ।
ଯେଽର୍ଚ୍ଚୟନ୍ତି ସଦା ଲିଙ୍ଗଂ ତ୍ୟକ୍ତଭାବୋ ଗାନଶେଷତଃ ॥୯୩
ଏକେନ ଜନ୍ମନା ତେଷାଂ ଦଦମି ପରମଂ ପଦମ୍ ।
ପରାତ୍ମାନଃ ସଦା ଲିଙ୍ଗଂ କେବଳଂ ରଜତପ୍ରଭମ୍ ॥୯୪
ଜ୍ଞାନାତ୍ମକଂ ସର୍ବଗତଂ ଯୋଗିନାଂ ହୃଦି ସଂସ୍ଥିତମ୍ ।
ଯେ ଚାନ୍ୟେ ନିୟତା ଭକ୍ତା ଭାବୟିତ୍ୱା ବିଧାନତଃ ॥୯୫
ଯତ୍ର କ୍ୱଚନ ତଲ୍ଲିଙ୍ଗମର୍ଚ୍ଚୟନ୍ତି ମହେଶ୍ୱରମ୍ ।
ଜଳେ ବା ବହ୍ନିମଧ୍ୟେ ବା ବ୍ୟୋମ୍ନି ସୂର୍ଯ୍ୟେଽପ୍ୟଥାନ୍ୟତଃ ॥୯୬

ଅଥବା ମରଣପର୍ଯ୍ୟନ୍ତ ବିରକ୍ତ ହୋଇ ପରମେଶ୍ୱରଙ୍କ ଲିଙ୍ଗକୁ ପୂଜନ କରିବା ଉଚିତ୍ । ଯିଏ ସମସ୍ତ ଭୋଗରୁ ବିରକ୍ତ ହୋଇ ସର୍ବଦା ଶିବଲିଙ୍ଗ ପୂଜନ କରିବାରେ ଲିପ୍ତ ରହିଥାଏ, ତାକୁ ଗୋଟିଏ ଜନ୍ମରେ ମୁଁ ପରମପଦ ପ୍ରଦାନ

କରିଥାଏ । ଯୋଗୀମାନଙ୍କ ହୃଦୟରେ ମୋର ପରମପଦ ପରି ପ୍ରଭାପ୍ରଦ, ଜ୍ଞାନାତ୍ମକ, ସର୍ବଗତ ଲିଙ୍ଗ ସର୍ବଦା ଉଦ୍ଭାସିତ ହୋଇ ରହିଥାଏ । ଯିଏ ନିୟତ ଭକ୍ତିଯୁକ୍ତ ଭକ୍ତ ଅଟେ, ସେ ବିଧି-ବିଧାନରେ ଯୁକ୍ତ ହୋଇ ଯେ କୌଣସି ସ୍ଥାନ ଲିଙ୍ଗଭାବନା କରି ମହେଶ୍ୱରଙ୍କୁ ପୂଜା କରିଥାଏ । ଭାବନା କରିବାଦ୍ୱାରା ଏପରି ମାନନ୍ତି ଯେ ଜଳରେ ଅଗ୍ନିରେ ଆକାଶରେ ସୂର୍ଯ୍ୟରେ ଅଥବା କୌଣସି ଅଭିମତ ସ୍ଥାନରେ ଭାବନା କରିବା ଶ୍ରେଷ୍ଠ ବୋଲି ମାନିଥାନ୍ତି ।

**ରତ୍ନାଦୌ ଭାବୟିତ୍ୱେଶମର୍ଚ୍ଚୟେଲ୍ଲିଙ୍ଗମୈଶ୍ୱରମ୍ ।**
**ସର୍ବଲିଙ୍ଗମୟଂ ହ୍ୟେତତ୍ ସର୍ବଂ ଲିଙ୍ଗେ ପ୍ରତିଷ୍ଠିତମ୍ ॥୯୭**
**ତସ୍ମାଲ୍ଲିଙ୍ଗେଽର୍ଚ୍ଚୟେଦୀଶଂ ଯତ୍ର କ୍ୱଚନ ଶାଶ୍ୱତମ୍ ।**
**ଅଗ୍ନୌ କ୍ରିୟାବତାମପ୍ସୁ ବ୍ୟୋମ୍ନି ସୂର୍ଯ୍ୟେ ମନୀଷିଣାମ୍ ॥୯୮**
**କାଷ୍ଠାଦିଷ୍ୱେବ ମୂର୍ଖାଣାଂ ହୃଦି ଲିଙ୍ଗନ୍ତୁ ଯୋଗିନାମ୍ ।**
**ଯଦ୍ୟନୁତ୍ପନ୍ନବିଜ୍ଞାନୋ ବିରକ୍ତଃ ପ୍ରୀତିସଂଯୁତଃ ॥୯୯**
**ଯାବଜ୍ଜୀବଂ ଜପେଦ୍ୟୁକ୍ତଃ ପ୍ରଣବଂ ବ୍ରହ୍ମଣୋ ବପୁଃ ।**
**ଅଥବା ଶତରୁଦ୍ରୀୟଂ ଜପେଦାମରଣାଦ୍ଦ୍ୱିଜଃ ॥୧୦୦**

ଅଥବା ରତ୍ନାଦିରେ ଈଶ୍ୱରଙ୍କ ଭାବନା କରି ଐଶ୍ୱର ଲିଙ୍ଗର ପୂଜା କରିବା ଉଚିତ୍ । ଏହି ଲିଙ୍ଗ ସର୍ବମୟ ଅଟେ । ସବୁ ବସ୍ତୁ ଲିଙ୍ଗରେ ହିଁ ପ୍ରତିଷ୍ଠିତ ଅଟେ । ଏଣୁ କୌଣସି ଅବସ୍ଥାରେ ଈଶ୍ୱରଙ୍କୁ ଲିଙ୍ଗରେ ପୂଜା କରିବା ପରମ ଆବଶ୍ୟକ ଅଟେ । କର୍ମକାଣ୍ଡୀ ଲୋକ ଅଗ୍ନି ଓ ଜଳରେ ଲିଙ୍ଗ ଭାବନାରେ ପୂଜା କରନ୍ତି । ବିଦ୍ୱାନ୍ ଲୋକ ସୂର୍ଯ୍ୟ ତଥା ଆକାଶରେ, ମୂର୍ଖ ଲୋକ କାଷ୍ଠପାଷାଣ ଆଦିରେ, ପରନ୍ତୁ ଯୋଗୀମାନେ ହୃଦୟରେ ଧ୍ୟାନ କରନ୍ତି । ଯଦି ଏହି ପ୍ରକାରର ଜ୍ଞାନ ଉତ୍ପନ୍ନ ନ ହୁଏ, ତେବେ ବିରକ୍ତ ପ୍ରୀତିପୂର୍ବକ ଯେ ପର୍ଯ୍ୟନ୍ତ ଜୀବନ ଅଛି ସେ ପର୍ଯ୍ୟନ୍ତ ବ୍ରହ୍ମବାଚକ ଓଁକାର ଜପ କରିବା ଉଚିତ୍ । ଅଥବା ମରଣପର୍ଯ୍ୟନ୍ତ ଶତରୁଦ୍ରୀୟ ଜପ କରିବା ଉଚିତ୍ ।

**ଏକାକୀ ଯତଚିତ୍ତାତ୍ମା ସ ଯାତି ପରମଂ ପଦମ୍ ।**
**ବସେଚ୍ଚାମରଣାଦ୍ୱିପ୍ରା ବାରାଣସ୍ୟାଂ ସମାହିତଃ ॥୧୦୧**
**ସୋଽପୀଶ୍ୱର ପ୍ରସାଦେନ ଯାତି ତତ୍ପରମଂ ପଦମ୍ ।**
**ତତ୍ରୋତ୍କ୍ରମଣକାଳେ ହି ସର୍ବେଷାମେବ ଦେହିନାମ୍ ॥୧୦୨**

ଦଦାତି ପରମଂ ଜ୍ଞାନଂ ଯେନ ମୁଚ୍ୟେତ ବନ୍ଧନାତ୍ ।
ବର୍ଣ୍ଣାଶ୍ରମବିଧିଂ କୃତ୍ସ୍ନଂ କୁର୍ବାଣୋ ମତ୍ପରାୟଣଃ ।।୧୦୩
ତେନୈବ ଜନ୍ମନା ଜ୍ଞାନଂ ଲବ୍ଧ୍ୱା ଯାତି ଶିବଂ ପଦମ୍ ।
ଯେଽପି ତତ୍ର ବସନ୍ତୀହ ନୀଚା ବୈ ପାପଯୋନୟଃ ।।୧୦୪
ସର୍ବେ ତରନ୍ତି ସଂସାରମୀଶ୍ୱରାନୁଗ୍ରହାଦ୍ଦ୍ୱିଜାଃ ।
କିନ୍ତୁ ବିଘ୍ନା ଭବିଷ୍ୟନ୍ତି ପାପୋପହତଚେତସାମ୍ ।।୧୦୫
ଧର୍ମାତ୍ ସମାଶ୍ରୟେତ୍ତସ୍ମାନ୍ମୁକ୍ତୟେ ସତତଂ ଦ୍ୱିଜାଃ ।
ଏତଦ୍ରହସ୍ୟଂ ବେଦାନାଂ ନ ଦେୟଂ ଯସ୍ୟ କସ୍ୟଚିତ୍ ।।୧୦୬

ଏକାକୀ ବିଚରଣ କରି ମନକୁ ନିୟମନ କରି ଯତି ପରମପଦକୁ ପ୍ରାପ୍ତ କରିଥାଏ । ଅଥବା ମରଣ ପର୍ଯ୍ୟନ୍ତ ହେ ବ୍ରାହ୍ମଣ ! ସମାହିତ ବୃତ୍ତିରେ କାଶୀରେ ନିବାସ କରି ଈଶ୍ୱରଙ୍କୁ ପ୍ରସନ୍ନତାରେ ପରମପଦ ପାଇଥାଏ । କାଶୀରେ ମରଣ ସମୟ ସମସ୍ତ ପ୍ରାଣୀମାନଙ୍କର ଭଗବାନ୍ କାଶୀପତି ପରମେଶ୍ୱର ପରମଜ୍ଞାନ (ଜୀବବ୍ରହ୍ମୈକ୍ୟ) ପ୍ରଦାନ କରିଥାନ୍ତି । ଯାହାଦ୍ୱାରା ସିଦ୍ଧ ହୋଇଥାଆନ୍ତି । ତାର ତା ନାମ ଓଁକାର ଅଟେ । ଏହି ଓଁକାରର ଉପଦେଶରେ ଏହିସବୁ ଜୀବ ଅମୃତଭାବକୁ ପ୍ରାପ୍ତ ହୋଇ ମୋକ୍ଷପଦ ଲାଭ କରିଥାଆନ୍ତି । ଏଣୁ ଏହି ଅବିମୁକ୍ତ କ୍ଷେତ୍ର କାଶୀରେ ସାଧନ କରିବା ସବୁଠାରୁ ଶ୍ରେୟସ୍କର ଅଟେ । ଯେଣୁ ହେ ଯାଜ୍ଞବଲ୍କ୍ୟ ! ଅବିମୁକ୍ତ କାଶୀ ତ୍ୟାଗ ନ କରିବା, ଏହି ରହସ୍ୟ ଏହି ପ୍ରକାରର ଅଟେ । ଅତଏବ ହେ ବୈଦିକ ମୁନିଗଣ ! ଏହି ବୈଦିକ ରହସ୍ୟ ମୁଁ ଆପଣ ସବୁ ଋଷିଙ୍କୁ ଉପଦେଶ ଦେଲି । କୌଣସି ଅନଧିକାରୀ ପୁରୁଷକୁ କେବେହେଲେ ପ୍ରଦାନ କରିବ ନାହିଁ । ଏହାର ଅଧିକାରୀ ଧାର୍ମିକ, ଭକ୍ତ, ବ୍ରହ୍ମଚାରୀ ଅଟନ୍ତି। ଏମାନଙ୍କୁ ଦେଲେ ତତ୍ତ୍ୱ ସଫଳୀଭୂତ ହୋଇଥାଏ ।

ଧାର୍ମିକା ଚୈବ ଦାତବ୍ୟଂ ଭକ୍ତାୟ ବ୍ରହ୍ମଚାରିଣେ ।
ଇତ୍ୟେତଦୁକ୍ତ୍ୱା ଭଗବାନ୍ ଶାଶ୍ୱତୋ ଯୋଗମୁତ୍ତମମ୍ ।।୧୦୭
ବ୍ୟାଜହାରସମାସୀନଂ ନାରାୟଣମନାମୟମ୍ ।
ମୟୈତଭାଷିତଂ ଜ୍ଞାନଂ ହିତାର୍ଥଂ ବ୍ରହ୍ମବାଦିନାମ୍ ।।୧୦୮
ଦାତବ୍ୟଂ ଶାନ୍ତଚିତ୍ତେଭ୍ୟଃ ଶିଷ୍ୟେଭ୍ୟୋ ଭବତା ଶିବମ୍ ।
ଉକ୍ତ୍ୱୈବମର୍ଥଂ ଯୋଗୀନ୍ଦ୍ରା ନ ବ୍ରବୀଭଗବାନଜଃ ।।୧୦୯

ପୂର୍ବୋକ୍ତ ସମସ୍ତ ଜ୍ଞାନ ଋଷିମାନଙ୍କୁ ଶୁଣାଇ କରି ଭଗବାନ୍ ଶ୍ରୀବ୍ୟାସଦେବ କହିଲେ- ହେ ଋଷିଗଣ ! ସନତ୍କୁମାରାଦି ଋଷିମାନଙ୍କୁ ସନାତନ ଅବ୍ୟୟ ଭଗବାନ୍ ଶ୍ରୀଶଙ୍କର ଉତ୍ତମ ଯୋଗ ଶୁଣାଇଥିଲେ ବୋଲି ନିକଟରେ ଥିବା ଜୀବସଂସାର ବନ୍ଧନରୁ ମୁକ୍ତ ହୋଇ ଯାଇଥିଲେ । ଯେଉଁ ପ୍ରାଣୀ ନିଜର ବର୍ଣ୍ଣାଶ୍ରମ ଧର୍ମ ଅନୁଷ୍ଠାନ କରି ମୋ ପରାୟଣ ହୋଇ ରହିବ, ସେ ସର୍ବଜନ୍ମରେ ଜ୍ଞାନପ୍ରାପ୍ତ କରି ଶିବପଦ ପ୍ରାପ୍ତ ହେବ । ହେ ବ୍ରାହ୍ମଣ ! ନୀଚ ବର୍ଣ୍ଣୋତ୍ପନ୍ନ ତଥା ପାପଯୋନିରେ ଉତ୍ପନ୍ନ ପଶୁପକ୍ଷୀ ଆଦି କାଶୀରେ ନିବାସ କରନ୍ତି, ସେମାନେ ମଧ୍ୟ ମରଣ କାଳରେ ଈଶ୍ୱର ଅନୁଗ୍ରହରେ ସଂସାରସାଗର ଅତିକ୍ରମ କରିଥାଆନ୍ତି । କିନ୍ତୁ ଏଠାରେ ନିବାସ କରିବା ପାଇଁ ଜୀବମାନଙ୍କୁ ବହୁତ ବିଘ୍ନ ଆସିଥାଏ, ଏଣୁ ହେ ଋଷିମାନେ ! ସର୍ବଦା ମୁକ୍ତି ପାଇଁ ଧର୍ମର ଆଶ୍ରୟ କରନ୍ତୁ । କାଶୀରେ ମୁକ୍ତି ବିଷୟରେ ଉପନିଷଦ୍ ମଧ୍ୟ ସାକ୍ଷୀ ଅଟେ । 'ଅତ୍ର ହି ଜନ୍ତୋ ପ୍ରାଣୀଷୂତ୍କ୍ରମମାଣେଷୁ ରୁଦ୍ରସ୍ତାରକଂ ବ୍ରହ୍ମ ବ୍ୟାଚଷ୍ଟେ ଯେନାସାବମୃତୀଭୂତ୍ୱା ମୋକ୍ଷ ଭବତି ତସ୍ମାଦ୍ୱିମୁକ୍ତମେବ ନିଷେବେତ ଅବିମୁକ୍ତ ନ ବିମୁଞ୍ଚ ଦେବମେବେତଦ୍ୟାଜ୍ଞବଲ୍କ୍ୟ'' (ଜାବାଲୋପନିଷଦ୍ -୧ ) ଅର୍ଥ କାଶୀରେ ଜୀବ ଯେବେ ମରିବ ତେବେ ଭଗବାନ୍ ଶଙ୍କର ତାରକ ଅର୍ଥାତ୍ ଓଁକାର ବ୍ରହ୍ମର ଉପଦେଶ ଦିଅନ୍ତି, କାରଣ ଏହା ହିଁ ସବୁ ମନ୍ତ୍ରରେ ଶ୍ରେଷ୍ଠ ଏବଂ ମୁକ୍ତଦାତା ଅଟେ । କେହି କେହି ମତବାଲା ଭିନ୍ନ ନାମର କଳ୍ପନାରେ ତାରକ ଶବ୍ଦର ବ୍ୟୁତ୍ପତ୍ତି କରନ୍ତି ପରନ୍ତୁ ତାହା ଗୌଣ ଅଟେ। ଉପନିଷଦ୍‌ରେ ମଧ୍ୟ ତାରକ ମନ୍ତ୍ର ଓଁକାର ବୋଲି କୁହାଯାଇଛି । ପ୍ରତ୍ୟୁତତାର ଏବ ତାରକ ଏହି ବ୍ୟୁତ୍ପତ୍ତିରେ ଓଁକାର ହିଁ ବିରାଜମାନ ଅଟେ । ଦିବ୍ୟସ୍ୱରୂପବାଲା ଶ୍ରୀନାରାୟଣ କହନ୍ତି ଯେ ଏହି ଜ୍ଞାନ ବ୍ରହ୍ମବାଦୀମାନଙ୍କର ହିତାର୍ଥ ଶୁଣାଇଥାଏ, ତେଣୁ ଏହି ଶାନ୍ତ ଚିତ୍ତବାଲା ଶିଷ୍ୟଙ୍କୁ ହିଁ ପ୍ରଦାନ କରାଯାଇଥାଏ। ଏହି ପ୍ରକାର ସମସ୍ତ ଯୋଗୀମାନଙ୍କ ପ୍ରତି ଉପର୍ଯୁକ୍ତ ନିର୍ଦ୍ଦେଶ କରି ଭଗବାନ୍ ଶ୍ରୀଶଙ୍କର ନିମ୍ନୋକ୍ତ ବିଷୟକୁ ବୁଝାଇଲେ-

ହିତାୟ ସର୍ବଭକ୍ତାନାଂ ଦ୍ୱିଜାତୀନାଂ ଦ୍ୱିଜୋତ୍ତମାଃ ।
ଭବନ୍ତୋଽପି ହି ମଜ୍ଜ୍ଞାନଂ ଶିଷ୍ୟାଣାଂ ବିଧିପୂର୍ବକମ୍ ॥୧୧୦
ଉପଦେକ୍ଷ୍ୟନ୍ତି ଭକ୍ତାନାଂ ସର୍ବେଷାଂ ବଚନାନ୍ମମ ।
ଅୟଂ ନାରାୟଣୋ ଯୋଽସାବୀଶ୍ୱରୋ ନାତ୍ର ସଂଶୟଃ ॥୧୧୧
ନାନ୍ତରଂ ଯେ ପ୍ରପଶ୍ୟନ୍ତି ତେଷାଂ ଦେୟମିଦଂ ପରମ୍ ।
ମମୈଷା ପରମା ମୂର୍ତ୍ତିର୍ନାରାୟଣସମାଚୟା ॥୧୧୨

ହେ ଦ୍ୱିଜୋତ୍ତମ ମୁନିଗଣ ! ଆପଣ ସମସ୍ତେ ମଧ୍ୟ ମୁଁ କହିଥିବା ଏହି ଜ୍ଞାନକୁ ସମସ୍ତ ଭକ୍ତମାନଙ୍କ ପାଇଁ ତଥା ଦ୍ୱିଜାତିର ଅର୍ଥ ଯିଏ ଯଥାର୍ଥ ରୂପରେ ଶିଷ୍ଟଭାବ ରଖିଥାନ୍ତି ବିଧିପୂର୍ବକ ମୋ ବଚନର ଉପଦେଶ ଦିଅନ୍ତି । ଆମ ପାଖରେ ଏ ଯେଉଁ ନାରାୟଣ ରହିଛନ୍ତି ସେ ହିଁ ଈଶ୍ୱର ଅଟନ୍ତି । ଏଥିରେ କୌଣସି ସନ୍ଦେହ ନାହିଁ। ଯିଏ ମୋର ଓ ନାରାୟଣଙ୍କ ମଧ୍ୟରେ ବିଶେଷ ଭେଦଭାବ ରଖି ନଥାଏ ତାହାଙ୍କୁ ଏହି ଜ୍ଞାନ ଆପଣମାନେ ଶୁଣାନ୍ତୁ, କାରଣ ଏହା ମୋର ନାରାୟଣ ନାମର ପରମ ଉତ୍କୃଷ୍ଟ ମୂର୍ତ୍ତି ଅଟେ ।

**ସର୍ବଭୂତାତ୍ମଭୂତସ୍ଥା ଶାନ୍ତା ଚାକ୍ଷରସଂସ୍ଥିତା ।**
**ଯେଽନ୍ୟଥା ମାଂ ପ୍ରପଶ୍ୟନ୍ତି ଲୋକେ ଭେଦଦୃଶୋ ଜନାଃ ॥୧୧୩**
**ନ ତେ ମୁକ୍ତିଂ ପ୍ରପଶ୍ୟନ୍ତି ଜାୟନ୍ତେ ଚ ପୁନଃ ପୁନଃ ।**
**ଯେ ତ୍ୱେନଂ ବିଷ୍ଣୁମବ୍ୟକ୍ତଂ ମାଞ୍ଚ ଦେବଂ ମହେଶ୍ୱରମ୍ ॥୧୧୪**
**ଏକୀଭାବେନ ପଶ୍ୟନ୍ତି ନ ତେଷାଂ ପୁନରୁଦ୍ଭବଃ ।**
**ତସ୍ମାଦନାଦିନିଧନଂ ବିଷ୍ଣୁମାତ୍ମାନମବ୍ୟୟମ୍ ॥୧୧୫**
**ମାମେବ ସମ୍ପ୍ରପଶ୍ୟଧ୍ୱଂ ପୂଜୟଧ୍ୱଂ ତଥୈବ ଚ ।**
**ଯେଽନ୍ୟଥା ସମ୍ପ୍ରପଶ୍ୟନ୍ତି ସତ୍ତ୍ୱୈବନ୍ ଦେବତାନ୍ତରମ୍ ॥୧୧୬**

ସମସ୍ତ ଭୂତରେ ଆତ୍ମା ରୂପରେ ଶାନ୍ତ ଅକ୍ଷର ଭାବର ଏହି ବିଷ୍ଣୁମୂର୍ତ୍ତି ଅଟନ୍ତି, ଯେଉଁ ଲୋକରେ ଭେଦବାନ୍ ଲୋକ ଅଟନ୍ତି । ଯେଉଁମାନେ ମୋଠାରେ ଓ ବିଷ୍ଣୁଙ୍କଠାରେ ଭେଦ ମାନନ୍ତି ସେମାନେ କେବେହେଲେ ମୁକ୍ତି ପାଆନ୍ତି ନାହିଁ । ପ୍ରକୃତରେ ସର୍ବଦା ଜନ୍ମ-ମରଣରୂପ ଚକ୍ରରେ ପଡନ୍ତି । ଯେଉଁମାନେ ମୋ ପାଖରେ ଓ ବିଷ୍ଣୁଙ୍କ ପାଖରେ ଅଭେଦଭାବକୁ ଦେଖିଥାଏ, ତାଙ୍କର ପୁନର୍ଜନ୍ମ ହୋଇ ନଥାଏ। ସେ ସର୍ବଦା ସଂସାର ବନ୍ଧନରୁ ମୁକ୍ତି ପାଇଥାଏ । ଏଣୁ ଆଦି ଅନ୍ତ ଶୂନ୍ୟ ମୋର ଆତ୍ମସ୍ୱରୂପ ଯାହା ବିଷ୍ଣୁସ୍ୱରୂପ ଅଟେ, ତାହା ମୁଁ ବୋଲି ବୁଝ ଓ ତାହାର ପୂଜାରେ ଯଦି କେହି ଏହି ରହସ୍ୟକୁ ବିପରୀତ ଭାବ ବୁଝନ୍ତି ସେମାନେ ଘୋର ନରକରେ ପଡ଼ନ୍ତି । ତାଙ୍କ ମଧ୍ୟରେ ବ୍ୟବସ୍ଥାପକ ରୂପର ଭାବ ନଥାଏ ।

**ତେ ଯାନ୍ତି ନରକାନ୍ ଘୋରାନ୍ନାହନ୍ତେଷୁ ବ୍ୟବସ୍ଥିତଃ ।**
**ମୂର୍ଖ ବା ପଣ୍ଡିତଂ ବାପି ବ୍ରାହ୍ମଣଂ ବା ମଦାଶ୍ରୟମ୍ ॥୧୧୭**
**ମୋଚୟାମି ସ୍ୱପାକଂ ବା ନ ନାରାୟଣନିନ୍ଦକମ୍ ।**
**ତସ୍ମାଦେଷ ମହାଯୋଗୀ ମଦ୍‌ଭକ୍ତୈଃ ପୁରୁଷୋତ୍ତମଃ ॥୧୧୮**

**ଅର୍ଚ୍ଚନୀୟୋ ନମସ୍କାର୍ଯ୍ୟୋ ମତ୍ପ୍ରୀତି ଜନନାୟ ବୈ ।**
**ଏବମୁକ୍ତ୍ୱା ବାସୁଦେବମାଲିଙ୍ଗ୍ୟ ସ ପିନାକଧୃକ୍ ।।୧୧୯**

ମୋର ଆଶ୍ରା ପ୍ରାପ୍ତ କରିଥିବା ମୂର୍ଖ ହେଉ ବା ପଣ୍ଡିତ ହେଉ, ବ୍ରାହ୍ମଣ ହେଉ ବା ଚାଣ୍ଡାଳ ହେଉ ମୁଁ ତାକୁ ସଂସାରବନ୍ଧନରୁ ମୁକ୍ତ କରିଥାଏ । ପରନ୍ତୁ ଶ୍ରୀବିଷ୍ଣୁଙ୍କ ନିନ୍ଦା କରୁଥିବା କାହାକୁ ମଧ୍ୟ କେବେହେଲେ ମୁକ୍ତି ଦେଇ ନଥାଏ । ଏଣୁ ମୋର ଭକ୍ତ ମହାଯୋଗୀ ପୁରୁଷୋତ୍ତମ ଶ୍ରୀବିଷ୍ଣୁଙ୍କୁ ମୋର ପ୍ରସନ୍ନତା ପାଇଁ ପୂଜା ନମସ୍କାର ଆଦି କରିଥାଏ । କାରଣ ମୋର ଭକ୍ତି ବିନା ଶ୍ରୀବିଷ୍ଣୁଙ୍କ ଭକ୍ତି ମିଳିବ ନାହିଁ । ଏଣୁ ଏହି ନିୟମକୁ ପାଳନ କରିବା ପରମ ଆବଶ୍ୟକ । ଏହା କହି ଶଙ୍କର ବାସୁଦେବଙ୍କୁ ଆଲିଙ୍ଗନ କରି ସମସ୍ତେ ଦେଖୁ ଦେଖୁ ଅନ୍ତର୍ଦ୍ଧାନ ହୋଇଗଲେ ।

**ଅନ୍ତର୍ହିତୋଽଭବତ୍ତେଷାଂ ସର୍ବେଷାମେବ ପଶ୍ୟତାମ୍ ।**
**ନାରାୟଣୋଽପି ଭଗବାନ୍ତାପସଂ ବେଷମୁତ୍ତମମ୍ ।।୧୨୦**
**ଜଗ୍ରାହ ଯୋଗିନଃ ସର୍ବାଂସ୍ତ୍ୟକ୍ତ୍ୱା ବୈ ପରମଂ ବପୁଃ ।**
**ଜ୍ଞାନଂ ଭବଦ୍ଭିରମଳଂ ପ୍ରସାଦାତ୍ପରମେଷ୍ଠିନଃ ।।୧୨୧**
**ସାକ୍ଷାଦ୍ଦେବ ମହେଶସ୍ୟ ଜ୍ଞାନଂ ସଂସାରନାଶନମ୍ ।**
**ଗଚ୍ଛଧ୍ୱଂ ବିଜ୍ୱରା ସର୍ବେ ବିଜ୍ଞାନଂ ପରମେଷ୍ଠିନଃ ।।୧୨୨**

ଶ୍ରୀ ଭଗବାନ୍ ନାରାୟଣ ମଧ୍ୟ ନିଜର ସୁନ୍ଦର ତାମସ ବେଶ ଗ୍ରହଣ କରି ନିଜର ଦିବ୍ୟସ୍ୱରୂପ ଶରୀରକୁ ଛାଡ଼ି ଦେଇଛନ୍ତି । ପୁଣି ତାହାପରେ ସମସ୍ତ ଋଷିମାନଙ୍କୁ କହିଲେ ହେ ମୁନିଗଣ ! ଆପଣ ସମସ୍ତେ ଈଶ୍ୱରଙ୍କ ପ୍ରସାଦରୁ ଯେଉଁ ବିଚିତ୍ର ଜ୍ଞାନ ପ୍ରାପ୍ତ ହେଲା ତାହା ପରମଲାଭ ବୋଲି ବୁଝନ୍ତୁ କାରଣ ଦେବାଧିଦେବ ଶ୍ରୀମହେଶ୍ୱରଙ୍କ ଜ୍ଞାନ ସମସ୍ତ ସଂସାର ବନ୍ଧନର ବିନାଶକ ଅର୍ଥାତ୍ ମୁକ୍ତିପ୍ରଦ । ଏଣୁ ହେ ଋଷିଗଣ ସମସ୍ତ ସାଂସାରିକ ତାପଶୂନ୍ୟ ହୋଇ ଶ୍ରୀଭଗବାନ୍ କୈଳାସପତିଙ୍କର ପରମ ବିଜ୍ଞାନକୁ ଧାର୍ମିକ ଶିଷ୍ୟଦ୍ୱାରା ଆପଣ ସମସ୍ତ ସଂସାରରେ ପ୍ରବୃତ୍ତ କରନ୍ତୁ ।

**ପ୍ରବର୍ତ୍ତୟଧ୍ୱଂ ଶିଷ୍ୟେଭ୍ୟୋ ଧାର୍ମିକେଭ୍ୟୋ ମୁନୀଶ୍ୱରା ।**
**ଇଦଂ ଭକ୍ତାୟ ଶାନ୍ତାୟ ଧାର୍ମିକାୟାହିତାଗ୍ନୟେ ।।୧୨୩**
**ବିଜ୍ଞାନମୈଶ୍ୱରଂ ଦେୟଂ ବ୍ରାହ୍ମଣାୟ ବିଶେଷତଃ ।**
**ଏବମୁକ୍ତ୍ୱା ସ ବିଶ୍ୱାତ୍ମା ଯୋଗିନାଂ ଯୋଗବିତ୍ତମଃ ।।୧୨୪**
**ନାରାୟଣୋ ମହାଯୋଗୀ ଜଗାମଦର୍ଶନଂ ସ୍ୱୟମ୍ ।**
**ଋଷୟସ୍ତେଽପି ଦେବେଶଂ ନମସ୍କୃତ୍ୟ ମହେଶ୍ୱରମ୍ ।।୧୨୫**

ଏଠାରେ ଶ୍ରୀଶଙ୍କରଙ୍କର ବିଜ୍ଞାନ, ଶାନ୍ତ, ଭକ୍ତ ଧାର୍ମିକ ଏବଂ ଅଗ୍ନିହୋତ୍ରୀ ବିଶେଷତଃ ବ୍ରାହ୍ମଣମାନଙ୍କ ପାଇଁ ଆପଣ ସମସ୍ତ ଜ୍ଞାନ ପ୍ରଦାନ କରନ୍ତୁ । ଏହିପରି ମୁନିମାନଙ୍କୁ ଉପଦେଶ ଦେଇ ବିଶ୍ୱାସ ଯୋଗୀମାନଙ୍କର ଶ୍ରେଷ୍ଠ ଯୋଗୀ ମହାଯୋଗେଶ୍ୱର ନାରାୟଣ ସ୍ୱୟଂ ଅଦୃଶ୍ୟ ହୋଇଗଲେ । ଋଷିମାନେ ମଧ୍ୟ ମହେଶ୍ୱର ଓ ନାରାୟଣଙ୍କୁ ନମସ୍କାର କରି ନିଜ ନିଜ ସ୍ଥାନକୁ ପ୍ରସ୍ଥାନ କଲେ ।

ବର୍ତ୍ତମାନ ଏହି ଗୀତା ଶାସ୍ତ୍ରର ପରମ୍ପରାଗତ ସମ୍ପ୍ରଦାୟ ପ୍ରବର୍ତ୍ତକ ମହର୍ଷିମାନଙ୍କ ନାମ ଗଣନାକୁ ଉଲ୍ଲେଖ କରି ତଥା ସଂକ୍ଷେପରେ କର୍ମଯୋଗର ଉପଦେଶ ଦେଇ ଏହି ଶାସ୍ତ୍ରକୁ ସମାପ୍ତ କରାହେଉଛି ।

**ନାରାୟଣଞ୍ଚ ଭୂତାଦିଂ ସ୍ୱାନି ସ୍ଥାନାନି ଲେଭିରେ ।**
**ସନତ୍‌କୁମାରୋ ଭଗବାନ୍ ସଂବର୍ତ୍ତାୟ ମହାମୁନିଃ ॥୧୨୬**
**ଦତ୍ତବାନୈଶ୍ୱରଂ ଜ୍ଞାନଂ ସୋଽପି ସତ୍ୟବ୍ରତାୟ ତୁ ।**
**ସନନ୍ଦନୋଽପି ଯୋଗୀନ୍ଦ୍ରଃ ପୁଲହାୟ ମହର୍ଷୟେ ॥ ୧୨୭**
**ପ୍ରଦଦୌ ଗୌତମାୟାଥ ପୁଲହୋଽପି ପ୍ରଜାପତିଃ ।**
**ଅଙ୍ଗିରା ବେଦବିଦୁଷେ ଭରଦ୍ୱାଜାୟ ଦତ୍ତବାନ୍ ॥୧୨୮**
**ଜୈଗୀଷବ୍ୟାୟ କପିଳସ୍ତଥା ପଞ୍ଚଶିଖାୟ ଚ ।**
**ପରାଶରୋଽପି ସନକାତ୍ପିତା ମେ ସର୍ବତତ୍ତ୍ୱଦୃକ୍ ॥୧୨୯**
**ଲେଭେ ତତ୍ପରମଂ ଜ୍ଞାନଂ ତସ୍ମାଦ୍‌ବାଲ୍ମୀକିରାପ୍ତବାନ୍ ।**
**ମମୋବାଚ ପୁରା ଦେବଃ ସତୀଦେହଭବାଙ୍ଗଜଃ ॥୧୩୦**

ପ୍ରଥମେ ଏହି ଶାସ୍ତ୍ର ଶ୍ରୀଶଙ୍କରଠାରୁ ପ୍ରାପ୍ତ କରି ଭଗବାନ୍ ସନତ୍‌କୁମାର ସମ୍ବର୍ତ୍ତନାମକ ମୁନିଙ୍କୁ ଉପଦେଶ ଦେଇଥିଲେ । ଯୋଗୀନ୍ଦ୍ର ସନନ୍ଦନ ପୁଲହ ମହର୍ଷିଙ୍କୁ ଶୁଣାଇଥିଲେ । ପୁଲହ ପ୍ରଜାପତି ଗୌତମ ମହର୍ଷିଙ୍କୁ ଶୁଣାଇଥିଲେ ବେଦବିଦ୍ୟାର ବିଦ୍ୱାନ୍ ଅଙ୍ଗିରା ମହର୍ଷିଙ୍କୁ ଏବଂ ଭାରଦ୍ୱାଜଙ୍କୁ ମଧ୍ୟ ଶୁଣାଇଥିଲେ । ଭଗବାନ୍ କପିଳ ଦେବ ଏହି ତତ୍ତ୍ୱ ଜୈବୀଷବ୍ୟ ଏବଂ ପଞ୍ଚଶିଖାଚାର୍ଯ୍ୟଙ୍କୁ ଦେଲେ । ବ୍ୟାସଦେବ କହିଲେ ଯେ ସନତ୍ ଋଷିଙ୍କଠାରୁ ଆମର ପିତା ପରାଶର ମହର୍ଷି ଯିଏ ସମସ୍ତ ବିଷୟର ପୂର୍ଣ୍ଣଜ୍ଞାତା ତାଙ୍କୁ ଏହି ପରମଜ୍ଞାନ ମିଳିଥିଲା । ତାଙ୍କଠାରୁ ଏହି ତତ୍ତ୍ୱ ବାଲ୍ମୀକି ମହର୍ଷିଙ୍କୁ ପ୍ରାପ୍ତ ହୋଇଥିଲା । ପୁରାତନ କାଳରେ ସତୀ (ପାର୍ବତୀ) ଓ ଶ୍ରୀମହାଦେବଙ୍କ ଅଙ୍ଗରୁ ଆବିର୍ଭୁତ ମହଯୋଗୀ ପିନାକପାଣି ଶ୍ରୀବାମଦେବ ରୁଦ୍ର ମତେ ଏହି ତତ୍ତ୍ୱ ଶୁଣାଇଥିଲେ ।

ବାମଦେବୋ ମହାଯୋଗୀ ରୁଦ୍ରଃ କିଲ ପିନାକଧୃକ୍ ।
ନାରାୟଣୋଽପି ଭଗବାନ୍ ଦେବକୀତନୟୋ ହରିଃ ॥୧୩୧
ଅର୍ଜୁନାୟ ସ୍ୱୟଂ ସାକ୍ଷାଦ୍ଦତ୍ତବାନିଦମୁତ୍ତମମ୍ ।
ଯଦାହଂ ଲବ୍ଧବାନ୍ ରୁଦ୍ରାଦ୍ବାମଦେବାଦନୁତ୍ତମମ୍ ॥୧୩୨
ବିଶେଷାଦ୍ଗିରିଶେ ଭକ୍ତିସ୍ତସ୍ମାଦାରଭ୍ୟ ମେଽଭବତ୍ ।
ଶରଣ୍ୟଂ ଗିରୀଶଂ ରୁଦ୍ରଂ ପ୍ରପନ୍ନୋଽହଂ ବିଶେଷତଃ ॥୧୩୨
ଭୂତେଶଂ ଗିରୀଶଂ ସ୍ଥାଣୁଂ ଦେବେ ଦେବଂ ତ୍ରିଶୂଳିନମ୍ ।
ଭଗବନ୍ତୋଽପି ହିତଂ ଦେବଂ ଶମ୍ଭୁ ଗୋବୃଷବାହନମ୍ ॥୧୩୪
ପ୍ରପଦ୍ୟନ୍ତାଂ ସପତ୍ନୀକାଃ ସୁପୁତ୍ରାଃ ଶରଣଂ ଶିବମ୍ ।
ବର୍ତ୍ତଧ୍ୱଂ ତତ୍ପ୍ରସାଦେନ କର୍ମ ଯୋଗେନ ଶଙ୍କରମ୍ ॥୧୩୫

ଶ୍ରୀନାରାୟଣ ଭଗବାନ୍ ଦେବକୀପୁତ୍ର ଶ୍ରୀକୃଷ୍ଣ ଏହି ଉତ୍ତମ ଜ୍ଞାନକୁ ମହାଭାରତରେ କର୍ତ୍ତବ୍ୟବିମୂଢ଼ ଅବସ୍ଥାରେ ଅର୍ଜୁନଙ୍କୁ ଶୁଣାଇଲେ । ଯେତେବେଳେ ମୁଁ ଶ୍ରୀଭଗବାନ୍ ରୁଦ୍ରସ୍ୱରୂପ ଶ୍ରୀବାମଦେବଙ୍କଠାରୁ ଏହି ଅପୂର୍ବ ଗୀତାଶାସ୍ତ୍ର ରହସ୍ୟ ଶୁଣିଲି, ସେତେବେଳେ ସେହି ବିଶେଷ ରୂପରେ ଶ୍ରୀକୈଳାସପତି ଭଗବାନ୍ ମହେଶ୍ୱରଙ୍କ ଚରଣରେ ମୋର ପ୍ରୀତି ହୋଇଗଲା । ସେତେବେଳଠୁ ମୁଁ ଭକ୍ତଙ୍କ ରକ୍ଷାକାରୀ ଶ୍ରୀଗିରୀଶଙ୍କ ପାଖରେ ସର୍ବତୋଭାବେ ଶରଣରେ ଆସିଲି । ତେଣୁ ଆପଣ ସମସ୍ତେ ପୁତ୍ର-ପତ୍ନୀ ଆଦି ସମସ୍ତ ବସ୍ତୁ ସହିତ ସମସ୍ତ ଜଗତର ସ୍ୱାମୀ ସ୍ଥାଣୁବତ୍ ନିଶ୍ଚଳ ଏବଂ ଏକରସ ଦେବତାଙ୍କର ମଧ୍ୟ ଦେବ ହସ୍ତରେ ତ୍ରିଶୂଳଧାରୀ ଶମ୍ଭୁ, ବୃଷଭ ବାହନ ଶିବଙ୍କ ଶରଣରେ ଆସ ଏବଂ ତାଙ୍କ ପ୍ରସନ୍ନତା ପାଇଁ ସମସ୍ତ ପ୍ରଚେଷ୍ଟା କରନ୍ତୁ ତଥା କର୍ମଯୋଗଦ୍ୱାରା ଶ୍ରୀଶଙ୍କର ମହାଦେବ, ଗୋପତି, ସର୍ପଭୂଷିତ ସ୍ୱାମୀଙ୍କର ପୂଜ କରନ୍ତୁ ।

ପୂଜ୍ୟଧ୍ୱଂ ମହାଦେବଂ ଗୋପତିଂ ବ୍ୟାଲଭୂଷଣମ୍ ।
ଏବମୁକ୍ତେ ପୁନସ୍ତେ ତୁ ଶୌନକାଦ୍ୟା ମହେଶ୍ୱରମ୍ ॥୧୩୬
ପ୍ରଣେମୁଃ ଶାଶ୍ୱତଂ ସ୍ଥାଣୁଂ ବ୍ୟାସଂ ସତ୍ୟବତୀସୁତମ୍ ।
ଅବ୍ରୁବନ୍ ହୃଷ୍ଟମନସଃ କୃଷ୍ଣଦ୍ୱୈପାୟନଂ ମୁନିମ୍ ॥୧୩୭
ସାକ୍ଷାଦ୍ଦେବଂ ହୃଷିକେଶଂ ଶିବଂ ଲୋକମହେଶ୍ୱରମ୍ ।
ଭବତ୍ପ୍ରସାଦାଦଚଲା ଶରଣ୍ୟେ ଗୋବୃଷଧ୍ୱଜେ ॥୧୩୮

**ଇଦାନୀଂ ଜାୟତେ ଭକ୍ତିର୍ଯା ଦେବୈରପି ଦୁର୍ଲଭା ।**
**କଥୟସ୍ୱ ମୁନିଶ୍ରେଷ୍ଠଃ କର୍ମଯୋଗମନୁତ୍ତମମ୍ ॥୧୩୯**

ଏହିପରି କହିଲା ପରେ ପୁନର୍ବାର ମହର୍ଷିମାନେ ଶ୍ରୀମହାଦେବଙ୍କୁ ପ୍ରଣାମ କଲେ ଏବଂ ପ୍ରସନ୍ନ ଚିତ୍ତରେ ସତ୍ୟବତୀ ପୁତ୍ର ଶ୍ରୀଭଗବାନ୍ କୃଷ୍ଣଦ୍ୱୈପାୟନ କହିଲେ । ଆପଣ ସାକ୍ଷାତ୍ ଭଗବାନ୍ ବାସୁଦେବ ଏବଂ ଲୋକର ସ୍ୱାମୀ ମହେଶ୍ୱରସ୍ୱରୂପ ଅଟନ୍ତି । ଆପଣଙ୍କ ପ୍ରସାଦରେ ହିଁ ଭକ୍ତମାନେ ଶ୍ରୀଶଙ୍କରଙ୍କ ଶରଣରେ ଆମମାନଙ୍କର ଅଚଳ ଭକ୍ତି ଉତ୍ପନ୍ନ ହୋଇଛି । ଯିଏ ଦେବଙ୍କ ପାଇଁ ମଧ ଦୁର୍ଲଭା ଏଣୁ ହେ ମୁନିଶ୍ରେଷ୍ଠ ! କର୍ମଯୋଗର ରହସ୍ୟ ଆମ୍ଭମାନଙ୍କୁ ଶୁଣାଅ ।

**ଯେନାସୌ ଭଗବାନୀଶଃ ସମାରାଧ୍ୟୋ ମୁମୁକ୍ଷୁଭିଃ ।**
**ତ୍ୱତ୍ସନ୍ନିଧାବେବ ସୂତଃ ଶୃଣୋତୁ ଭଗବଦ୍‌ବଚଃ ॥୧୪୦**
**ତଦ୍ୱଚ୍ଚାଖିଳଲୋକାନାଂ ରକ୍ଷଣଂ ଧର୍ମସଂଗ୍ରହମ୍ ।**
**ଯଦୁକ୍ତଂ ଦେବଦେବେନ ବିଷ୍ଣୁନା କୂର୍ମରୂପିଣା ॥୧୪୧**
**ପୃଷ୍ଟେନ ମୁନିଭିଃ ସର୍ବଂ ଶକ୍ରେଣାମୃତମନ୍ଥନେ ।**
**ଶ୍ରୁତ୍ୱା ସତ୍ୟବତୀ ସୂନୁଃ କର୍ମଯୋଗଂ ସନାତନମ୍ ॥୧୪୨**

ଯେଉଁ ଜ୍ଞାନରେ ଭଗବାନ୍ ଈଶ ମୁମୁକ୍ଷୁଙ୍କଦ୍ୱାରା ଆରାଧିତ ହୋଇଥାନ୍ତି ତାହା ଆପଣଙ୍କ ନିକଟରେ ବସି ଶ୍ରୀସୁତମୁନି ମଧ ଆପଣଙ୍କ କଥା ଶୁଣିଲେ । ଯେଉଁ ଜ୍ଞାନକୁ କୂର୍ମାବତାର ଶ୍ରୀବିଷ୍ଣୁ ଅଖିଳ ସଂସାରଜନଙ୍କ ରକ୍ଷଣ ଓ ଧର୍ମରକ୍ଷା କରିବା ସମୟରେ ସମୁଦ୍ରମନ୍ଥନ କାଳରେ ସମସ୍ତ ମୁନି ଏବଂ ଇନ୍ଦ୍ର ପଚାରିବାରୁ ମୁନିମାନଙ୍କର ପ୍ରଶ୍ନ ଅନୁସାରେ ଶ୍ରୀଭଗବାନ୍ ବ୍ୟାସଦେବ ସମାହିତ ଚିତ୍ତରେ ଏହି କର୍ମଯୋଗର ରହସ୍ୟ ଯଥାବିଧି ଶ୍ରବଣ କରାଇଲେ ।

**ମୁନିନାଂ ଭାଷିତଂ କୃତ୍ସ୍ନଂ ପ୍ରୋବାଚ ସୁସମାହିତଃ ।**
**ଯ ଇମଂ ପଠତେ ନିତ୍ୟଂ ସଂବାଦଂ କୃତିବାସସଃ ॥୧୪୩**
**ସନତ୍‌କୁମାରପ୍ରମୁଖୈଃ ସର୍ବପାପୈଃ ପ୍ରମୁଚ୍ୟତେ ।**
**ଶ୍ରାବୟେଦ୍ୱା ଦ୍ୱିଜାନ୍ ଶୁଦ୍ଧାନ୍ ବ୍ରହ୍ମଚର୍ଯ୍ୟପରାୟଣାନ୍ ॥୧୪୪**
**ଯୋ ବା ବିଚାରୟେଦର୍ଥଂ ସ ଯାତି ପରମାଂ ଗତିମ୍ ।**

ଶ୍ରୀଶଙ୍କର ସନତ୍କୁମାର ଆଦି ମୁନିମାନଙ୍କୁ ଏହି ଉତ୍ତମ ସଂବାଦକୁ କହିଲେ । ସେହି ପୁରୁଷ ସବୁ ପ୍ରକାରର ପାପରୁ ମୁକ୍ତ ହୋଇଯାଏ । ଯିଏ ଏହି ତତ୍ତ୍ୱ ରହସ୍ୟକୁ

ଶୁଦ୍ଧ ବ୍ରହ୍ମଚର୍ଯ୍ୟ ପରାୟଣ ବ୍ରାହ୍ମଣଙ୍କୁ ଶୁଣାଇଥାଏ ଅଥବା ଏହାର ଅର୍ଥ ବିଚାର କରିଥାଏ ସେ ପରମଗତି ଲାଭ କରିଥାଏ ।

**ଯଶ୍ଚୈତଚ୍ଛୃଣୁୟାନ୍ନିତ୍ୟଂ ଭକ୍ତିଯୁକ୍ତୋ ଦୃଢବ୍ରତଃ ॥୧୪୫**
**ସର୍ବପାପବିନିର୍ମୁକ୍ତୋ ବ୍ରହ୍ମଲୋକେ ମହୀୟତେ ।**
**ଶ୍ରୋତବ୍ୟଶ୍ଚାନୁମନ୍ତବ୍ୟୋ ବିଶେଷାଦ୍‌ବ୍ରହ୍ମଣୈଃ ସଦା ॥୧୪୬**

ଯିଏ ଏହି ଦୃଢବ୍ରତଧାରୀ ପୁରୁଷ ଭକ୍ତିଯୁକ୍ତ ହୋଇ ଶୁଣିବ ସେ ସମସ୍ତ ପାପଶୂନ୍ୟ ହୋଇ ବ୍ରହ୍ମଲୋକରେ ପୂଜିତ ହୋଇଥାଏ। ଏଣୁ ବିଦ୍ୱାନ୍‌ଗଣ ସର୍ବ ଉପାୟରେ ଏହାକୁ ପାଠ କର । ବିଶେଷତଃ ବ୍ରାହ୍ମଣମାନେ ଏହାକୁ ଶ୍ରବଣ କରି ଯୁକ୍ତିପୂର୍ବକ ବିଚାର କରିବା ଉଚିତ୍ ।

ଇତି ଶ୍ରୀକୂର୍ମପୁରାଣେ ଉତ୍ତରାର୍ଦ୍ଧେ ଈଶ୍ୱରଗୀତାସୁ ଉପନିଷତ୍ସୁ ବ୍ରହ୍ମବିଦ୍ୟାୟାଂ ଯୋଗଶାସ୍ତ୍ରେ ଋଷିବ୍ୟାସସଂବାଦେ ଏକାଦଶୋଽଧ୍ୟାୟଃ ।

---*---

## ଲେଖିକା ପରିଚୟ ...



କୁଞ୍ଜକାନ୍ତ, ଢେଙ୍କାନାଳ ନିବାସୀ ଡକ୍ଟର ଜୟଶ୍ରୀ ନନ୍ଦ (ପିତା ଶ୍ରୀବସନ୍ତ କୁମାର ନନ୍ଦ (ଅବସରପ୍ରାପ୍ତ ଓ. ପ୍ର. ସେ) ଓ ମାତା ପ୍ରେମଶିଳା ନନ୍ଦ) ୧୯୮୩ ମସିହାରେ ଢେଙ୍କାନାଳ ସରକାରୀ କଲେଜରୁ ସ୍ନାତକ(ବି.ଏ) ଉତ୍ତୀର୍ଣ୍ଣ ହେବା ପରେ ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟରେ ୧୮୮୫ରେ ଆଚାର୍ଯ୍ୟ (ଅଦ୍ୱୈତବେଦାନ୍ତ) ଉତ୍ତୀର୍ଣ୍ଣ ହୋଇଛନ୍ତି । ୧୯୯୩ ମସିହାରେ **'ସ୍ମୃତି ପ୍ରସ୍ଥାନ ଏକ ସମୀକ୍ଷାତ୍ମକ ଅଧ୍ୟୟନ'** ଶୀର୍ଷକ ପ୍ରବନ୍ଧ ଲେଖି ବିଦ୍ୟାବାରିଧି(ପି.ଏଚ୍.ଡି.) ଉପାଧି ଲାଭ କରିଛନ୍ତି । ୧୯୮୭ ମସିହାରୁ ବାରିପଦା ସରକାରୀ ସଂସ୍କୃତ ମହାବିଦ୍ୟାଳୟରେ ଦର୍ଶନ ଅଧ୍ୟାପିକା ଭାବେ ନିଯୁକ୍ତି ପାଇବା ସହିତ ଅନୁଷ୍ଠାନ ମୁଖ୍ୟ ଭାବେ ଅଦ୍ୟାବଧି ଦାୟିତ୍ୱ ନିର୍ବହନ କରିଆସୁଛନ୍ତି । ଶ୍ରୀମତୀ ନନ୍ଦଙ୍କ ମାର୍ଗଦର୍ଶନରେ ଜଣେ ଛାତ୍ରୀ 'A Comparative Study of Mahama Philosophy of Orissa & Advaita Philosophy' (Ph.D) ଉପାଧି ମଧ୍ୟ ପାଇଅଛନ୍ତି ।

ଶ୍ରୀମତୀ ନନ୍ଦ ସର୍ବଭାରତୀୟ ସ୍ତରୀୟ ସେମିନାରରେ ଯୋଗଦାନ କରିବା ସହିତ ତାଙ୍କର ଅନେକ ଗବେଷଣାତ୍ମକ ପ୍ରବନ୍ଧ ଓ କବିତାମାନ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶ ପାଇଛି । ଏହା ସହିତ ୫ଗୋଟି ଗବେଷଣା-ଧର୍ମୀ ପୁସ୍ତକ ମଧ୍ୟ ପ୍ରକାଶିତ ତନ୍ମଧ୍ୟରୁ 'ଈଶ୍ୱରଗୀତା' ଅନ୍ୟତମ ।

*Printed & Published by :*

**Aum Prakashan Mandir,**
Puri, ODISHA 752001;
*e-mail: info@aumbooks.in*
*website: www.aumbooks.in;*




Price :₹ 60/- Only